ବିଶ୍ୱସାହିତ୍ୟ ଗ୍ରନ୍ଥମାଳା : ସଂଖ୍ୟା-୬୦

# ବିଚିତ୍ର ତାବିଜ

[ ଇଂରେଜ ଔପନ୍ୟାସିକ ସାର୍ ୱାଲ୍‌ଟର
ସ୍କଟ୍‌ଙ୍କ ଉପନ୍ୟାସ The Talismanର
ଓଡ଼ିଆ ରୂପାନ୍ତର ]

ଅନୁବାଦ :
ଅଧ୍ୟାପକ ଶ୍ରୀଧର ଦାସ



ପ୍ରକାଶକ :
ଶ୍ରୀ ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର
କଟକ-୨ : ବ୍ରହ୍ମପୁର

ମୁଦ୍ରାକର
ଶ୍ରୀ ଅଜୟକୁମାର ଘୋଷ
ଶ୍ରୀହରନାଥ ପ୍ରେସ
କଟକ-୨

ପ୍ରଥମ ମୁଦ୍ରଣ
ଅକ୍ଟୋବର, ୧୯୭୦

ମୂଲ୍ୟ
ଟ ୨-୨୫

# ସୂଚନା

ଖ୍ରୀଷ୍ଟିଆନମାନଙ୍କର ତୀର୍ଥଭୂମି ଜେରୁଜେଲମ ମୁସଲମାନମାନଙ୍କ ହସ୍ତଗତ ହେବାରୁ ଇଉରୋପର ଖ୍ରୀଷ୍ଟିଆନ ରାଜାମାନେ ଏହାର ଉଦ୍ଧାର ଲାଗି ଉଦ୍ୟତ ହୋଇଥିଲେ । ସେମାନେ ଇଂଲଣ୍ଡର ରାଜା ରିଚାର୍ଡ଼ଙ୍କ ନେତୃତ୍ୱରେ ଦୀର୍ଘ ଦିନ ଧରି ମୁସଲମାନମାନଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇଥିଲେ । ଧର୍ମରକ୍ଷା ନିମନ୍ତେ ଏହି ଯୁଦ୍ଧ ହୋଇଥିବାରୁ ଏହାକୁ କ୍ରୁଜେଡ଼ ବା ଧର୍ମଯୁଦ୍ଧ ଆଖ୍ୟା ଦିଆଯାଇଅଛି । ଇଉରୋପର ନାଇଟ ଉପାଧିଧାରୀ ବହୁସଂଖ୍ୟକ ବୀର ଯୋଦ୍ଧା ନିଜ ନିଜ ଅନୁଚର ସହ ଏହି ଯୁଦ୍ଧରେ ଯୋଗ ଦେଇଥିଲେ । ସୁଲତାନ ସାଲାଦିନ ମୁସଲମାନ ଥିଲେହେଁ ବୀର ଥିଲେଓ ଅନ୍ୟ ଧର୍ମର ବୀରଙ୍କୁ ଉପଯୁକ୍ତ ସମ୍ମାନ ଦେବାକୁ କୁଣ୍ଠିତ ନ ଥିଲେ ।

ମଧ୍ୟଯୁଗର ଏହି ସଙ୍ଘର୍ଷ ସମୟର ଘଟଣାକୁ ଅବଲମ୍ବନ କରି ପ୍ରସିଦ୍ଧ ଔପନ୍ୟାସିକ ସାର୍ ୱାଲଟର ସ୍କଟ ତାଙ୍କର 'ଟାଲିସମାନ' (ବିଚିତ୍ର ତାବିଜ) ନାମକ ଐତିହାସିକ ଉପନ୍ୟାସ ଲେଖିଛନ୍ତି । ସେହି ଉପନ୍ୟାସର ସାର କଥା ଏହି ପୁସ୍ତକରେ ଦିଆଯାଇଛି ।

---

# ସୂଚୀ

## ଏକ : ମରୁଭୂମିରେ

ରକ୍ତବର୍ଣ୍ଣର କ୍ରୁଶଧାରୀ ଜଣେ ନାଇଟ୍ ଧର୍ମ-ଯୁଦ୍ଧରେ ଯୋଗ ଦେଇ ପାଲେଷ୍ଟାଇନ ଅଞ୍ଚଳରେ ଯୁଦ୍ଧ କରୁଥିଲେ । ଦିନେ ସେ ଅଶ୍ୱାରୋହଣ କରି ସମୁଦ୍ର ଧାରେ ଧାରେ ମରୁପଥରେ ଚାଲିଥିଲେ । କ୍ଲାନ୍ତିରେ ତାଙ୍କର ଗତି ମନ୍ଥର ହେଉଥିଲା । ନିକଟରେ ମଧୁର ଜଳ ନ ଥିଲା କି କୌଣସି ବୃକ୍ଷଲତା ନଥିଲା । ଚତୁର୍ଦ୍ଦିଗରେ କେବଳ ରୁକ୍ଷ ବାଲୁକାଛଡ଼ା ଆଉ କିଛି ଦେଖାଯାଉ ନଥିଲା । ସୂର୍ଯ୍ୟଙ୍କର ପ୍ରଖର କିରଣ ନାଇଟ୍‌ଙ୍କର ସାଞ୍ଜୁ ଉପରେ ପଡ଼ି ତାଙ୍କୁ ଅସ୍ଥିର କରି ଦେଉଥିଲା । ତାଙ୍କ ପିଠିରେ ଢାଲ ଶୋଭା ପାଉଥିଲା । କମରବନ୍ଧରୁ ଗୋଟିଏ ତରବାରି ଓ ଗୋଟିଏ ଛୁରୀ ଝୁଲୁଥିଲା; ହାତରେ ଥିଲା ଗୋଟିଏ ଦୀର୍ଘ ବର୍ଚ୍ଛା ।

ନାଇଟଙ୍କର ପୋଷାକଟି ମଳିନ ହେଲେ ହେଁ ତା ଉପରେ ଗୋଟିଏ ଚିତାବାଘର ଛବି ଥିଲା । ତାଙ୍କ ଢାଲରେ ମଧ୍ୟ ସେହି ଚିତାବାଘର ଛବି । ନାଇଟ ଏହି ଚିତାବାଘର ଛବିକୁ ନିଜର ସଙ୍କେତ ରୂପେ ଗ୍ରହଣ କରିଥିବା ଏଥିରୁ ଜଣାପଡ଼ୁଥିଲା ।

ଆରୋହୀ ଯେପରି ଲୌହ-ସାଞ୍ଜୁରେ ଆବୃତ, ତାଙ୍କ ଅଶ୍ୱଟି ମଧ୍ୟ ସେହିପରି ସାଞ୍ଜୁ ପରିହିତ । ଅଶ୍ୱର ଜିନ୍ ସହିତ ଗୋଟିଏ କୁଠାର ସଂଯୁକ୍ତ ଥିଲା ।

ଦେଖିଲା ମାତ୍ରେ ଜଣାପଡ଼ୁଥିଲା ଯେ ନାଇଟଙ୍କ ଶରୀରରେ ଯଥେଷ୍ଟ ଶକ୍ତି ଓ ମନରେ ଦୃଢ଼ତା ଅଛି । ମାତ୍ର ସେ ଥିଲେ ଦରିଦ୍ର ।

ଧର୍ମଯୋଦ୍ଧାମାନେ ଯୁଦ୍ଧ ସମୟରେ କୃଷକମାନଙ୍କ ଉପଦ୍ରବରୁ ରକ୍ଷା କରିବାପାଇଁ ଲକ୍ଷ ନେଉଥିଲେ । କିନ୍ତୁ ଏହି ନାଇଟ୍ ସେପରି କରୁନଥିଲେ । ଅନ୍ୟ ନାଇଟମାନେ ନିଜର ଅନୁଚରମାନଙ୍କୁ ଲୁଣ୍ଠନ କରିବାକୁ ସୁଯୋଗ ଦେଉଥିଲେ ; ମାତ୍ର ଏହି ନାଇଟ ସେପରି କରିବାକୁ ଦେଉ ନ ଥିଲେ । ଏହା ଫଳରେ ତାଙ୍କର ଅନୁଚରମାନଙ୍କ ମଧ୍ୟରୁ କେତେକେ ରୋଗରେ ପ୍ରାଣ ହରାଇଥିଲେ, ଅନ୍ୟ କେତେକେ ତାଙ୍କୁ ପରିତ୍ୟାଗ କରି ଚାଲି ଯାଇଥିଲେ । ବର୍ତ୍ତମାନ ତାଙ୍କର ଜଣେମାତ୍ର ଅନୁଚର ଥିଲା । ସେ ମଧ୍ୟ ରୋଗରେ ଶଯ୍ୟାଶାୟୀ ଥିବାରୁ ନାଇଟ ଏକାକୀ ଆସୁଥିଲେ ।

ସମୟ ପ୍ରାୟ ଦ୍ୱିପ୍ରହର । ନାଇଟ ଅଳ୍ପ ଦୂରରେ ଗୋଟିଏ ମରୁକୂପର ସନ୍ଧାନ ପାଇ ବିଶ୍ରାମ ଉଦ୍ଦେଶ୍ୟରେ ସେହି ଆଡ଼କୁ ଅଗ୍ରସର ହେଲେ ।

ଏହି ନାଇଟଙ୍କର ନାମ ହେଉଛି, ସାର୍ କେନେଥ । ସେ ସମୟରେ ଇଂଲଣ୍ଡ ଓ ସ୍କଟଲଣ୍ଡର ରାଜାଙ୍କ ମଧ୍ୟରେ ସେପରି ବନ୍ଧୁତା ନ ଥିଲେହେଁ ଧର୍ମଯୁଦ୍ଧରେ ଯୋଗ ଦେଇ ପବିତ୍ର ଜେରୁ-ଜେଲମର ଉଦ୍ଧାରରେ ସାହାଯ୍ୟ କରିବା ପାଇଁ ସ୍କଟଲଣ୍ଡର ଏହି ନାଇଟ ଇଂଲଣ୍ଡର ରାଜାଙ୍କ ନେତୃତ୍ୱ ସ୍ୱୀକାର କରିନେଇଥିଲେ ।

ସାର୍ କେନେଥ୍ ମରୁଦ୍ୱୀପରେ ପହଞ୍ଚିବା ପୂର୍ବରୁ ଜଣେ ଅଶ୍ୱାରୋହୀ ମୁସଲମାନ ସୈନିକ ଦୃଷ୍ଟିଗୋଚର ହେଲେ । ଏହି ସୈନିକ ମଧ୍ୟ ଢାଲ, ଖଣ୍ଡା, ଧନୁଶର ପ୍ରଭୃତି ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥିଲେ । ସେ ବିଦ୍ୟୁତ୍ ବେଗରେ ଅଶ୍ୱଚାଳନା କରି କେନେଥଙ୍କ ଉପରକୁ ମାଡ଼ି ଆସିଲେ । ସେ ଆଶା କରିଥିଲେ, ଏହି ଶତ୍ରୁ ସୈନିକ ମଧ୍ୟ ସେହିପରି ତାଙ୍କୁ ଆକ୍ରମଣ କରିବାକୁ ଆସିବ । ମାତ୍ର କେନେଥ ପ୍ରତିଆକ୍ରମଣ କରିବାର କୌଣସି ଲକ୍ଷଣ ପ୍ରକାଶ ନ କରିବାରୁ

ସେ କୌଶଳରେ ନିଜର ଅଶ୍ୱକୁ କେନେଥଙ୍କର ଏକ ପାର୍ଶ୍ୱ କୁ ଚଳାଇଲେ । ଚତୁର କେନେଥ ସେହିପରି ରହି କେବଳ ତାଙ୍କ ଆଡ଼କୁ ମୁଖ ଫେରାଇଲେ । ତହୁଁ ମୁସଲମାନ ସୈନିକ କେନେଥଙ୍କ ଚତୁଃପାର୍ଶ୍ୱରେ ଅଶ୍ୱକୁ ଚକାକାରରେ ବୁଲାଇ ଅତର୍କିତ ମୁହୂର୍ତ୍ତରେ ତାଙ୍କୁ ଆକ୍ରମଣ କରିବାକୁ ଉଦ୍ୟମ କଲେ । କିନ୍ତୁ କେନେଥ ଶିର ସତର୍କ । ସେ ଏକ ସ୍ଥାନରେ ରହି କେବଳ ଢ଼ାଲ ଧରି ମୁସଲମାନ ସୈନିକଙ୍କର ସମ୍ମୁଖୀନ ହେଲେ । ମୁସଲମାନ ସୈନିକଟି ନିକଟରୁ ଆକ୍ରମଣର ସୁଯୋଗ ନ ପାଇ ଟିକିଏ ଦୂରକୁ ଚାଲିଗଲେ ଏବଂ ତୂଣୀରରୁ ଶର ବାହାର କରି କେନେଥ ଓ ତାଙ୍କ ଅଶ୍ୱ ଉପରେ ଶର ବୃଷ୍ଟି କଲେ । ତୀକ୍ଷ୍ଣ ଶରଗୁଡ଼ିକ କେନେଥ କିମ୍ବା ତାଙ୍କ ଅଶ୍ୱର ବର୍ମକୁ ଭେଦ ନକରି ତଳେ ପଡ଼ିଲା । କିନ୍ତୁ ଶେଷରେ ଗୋଟିଏ ତୀର କେନେଥଙ୍କ ଶରୀରର କୌଣସି ସନ୍ଧି ସ୍ଥାନରେ ବାଜିବାରୁ ସେ ଆହତ ହୋଇ ତଳେ ପଡ଼ିଗଲେ ।

ମୁସଲମାନ ସୈନିକ ନିଜ ଅଶ୍ୱରୁ ଓହ୍ଲାଇ ପଡ଼ି କେନେଥଙ୍କ ନିକଟକୁ ଚାଲିଆସିଲେ । ନାଇଟ ତାଙ୍କ ଶରରେ ଆହତ କି ମୃତ ତାହା ଦେଖିବା ତାଙ୍କର ଉଦ୍ଦେଶ୍ୟ ଥିଲା । ହଠାତ୍ କେନେଥ ଭୂମିରୁ ଲମ୍ଫଦେଇ ମୁସଲମାନ ସୈନିକଙ୍କୁ ଦୃଢ଼ରୂପେ ଧରିପକାଇଲେ । ତାଙ୍କ ବଜ୍ରମୁଷ୍ଟିରୁ ଉଦ୍ଧାର ପାଇବାଲାଗି ସୈନିକଟି ଅସିସଂଲଗ୍ନ କମରବନ୍ଧଟି ଫିଟାଇ ଦେଲେ ଓ ଶୀଘ୍ର ପଳାଇଯାଇ ପୁଣି ନିଜ ଅଶ୍ୱ ଆରୋହଣ କରି କିଛି ଦୂରକୁ ଚାଲିଗଲେ । ବୋଧହୁଏ ଏଥିମଧ୍ୟରେ ସେ କେନେଥଙ୍କର ଶକ୍ତିର ପରିଚୟ ପାଇ ସାରିଥିଲେ ।

ବର୍ତ୍ତମାନ ମୁସଲମାନ ସୈନିକଟି ପ୍ରାୟ ନିରସ୍ତ୍ର । ସେ ଦେଖିଲେ, ଏ କ୍ଷେତ୍ରରେ ଶକ୍ତି ଅପେକ୍ଷା ବୁଦ୍ଧି କୌଶଳ ବେଶି

ପ୍ରୟୋଜନ । ବନ୍ଧୁତାର ଚିହ୍ନ ସ୍ୱରୂପ ସେ ଡାହାଣ ହାତ ବଢ଼ାଇ ଦେଇ ପୁଣି କେନେଥଙ୍କ ନିକଟକୁ ଆସି କହିଲେ, "ଖ୍ରୀଷ୍ଟିଆନ ଓ ମୁସଲମାନ ନେତାମାନଙ୍କ ମଧ୍ୟରେ ଏକ ମାସ ନିମନ୍ତେ ଯୁଦ୍ଧ-ବିରତି ଚୁକ୍ତି ହୋଇଥିବା କଥା ଶୁଣିଥିବ । ତେଣୁ ଆମ ଦୁହିଁଙ୍କ ମଧ୍ୟରେ ଶାନ୍ତି ସ୍ଥାପିତ ହେଉ ।"

କେନେଥ ଉତ୍ତର କଲେ, "ମୁଁ ତା ଜାଣେ, କିନ୍ତୁ ତୁମଭଳି ଜଣେ ମୁସଲମାନ ସୈନିକ ଯେ ତାର କଥା ରକ୍ଷା କରିବ, ମୁଁ ତାହା ବିଶ୍ୱାସ କରିବି କିପରି ?"

ସୈନିକ ଟିକିଏ ରୁକ୍ଷ ସ୍ୱରରେ କହିଲେ, "ମୁସଲମାନ ମାନେ ନିଜର କଥା କେବେ ହେଲେ ଲଙ୍ଘନ କରେ ନାହିଁ । ତୁମେ ବିଧର୍ମୀ ହେଲେ ମଧ୍ୟ ତୁମର କଥାକୁ ମୁଁ ବିଶ୍ୱାସ କରିବି । କାରଣ ମୁଁ ଦେଖୁଛି, ତୁମେ ପ୍ରକୃତ ବୀର । ବୀରତ୍ୱ ସହିତ ବିଶ୍ୱାସଘାତକତା କଦାପି ରହି ନ ପାରେ ।"

ଦୁହେଁ ଯାକ ଏକ ସଙ୍ଗରେ ପରସ୍ପର ବନ୍ଧୁ ଭଳି ମରୁକୂପ ନିକଟକୁ ଗଲେ । ନିଜ ନିଜର ପୋଷାକ ଖୋଲି ଅଶ୍ୱ ଦୁଇଟିକୁ ଜଳ ପାନ କରାଇଲେ ଓ ନିଜେ ତୃପ୍ତି ସହକାରେ ଜଳ ପାନ କଲେ । ତଦନନ୍ତର ଦୁଇଜଣ ଯାକ ନିଜ ନିଜର ଖାଦ୍ୟ ବାହାର କରି ଖାଇଲେ ।

ଦୁହିଁଙ୍କ ମଧ୍ୟରେ ସାମ୍ୟ ଅପେକ୍ଷା ବୈଷମ୍ୟ ବେଶି ଜଣା ପଡ଼ୁଥିଲା । ଖ୍ରୀଷ୍ଟିଆନ ନାଇଟଙ୍କର ଶରୀର ହୃଷ୍ଟପୁଷ୍ଟ ଓ ଅଙ୍ଗ ପ୍ରତ୍ୟଙ୍ଗର ମାଂସପେଶୀ ସୁସ୍ପଷ୍ଟ ଦେଖାଯାଉଥିଲା । ତାଙ୍କ କେଶ ଈଷତ୍ ତାମ୍ରବର୍ଣ୍ଣ, ନୀଳ ଚକ୍ଷୁ ଦୁଇଟି ଚଞ୍ଚଳ । ସେ ଯେ ଆଦେଶ ପାଳନ ଅପେକ୍ଷା ଆଦେଶ ଦେବାରେ ଅଧିକ ଅଭ୍ୟସ୍ତ ତାହା ତାଙ୍କ କଣ୍ଠସ୍ୱରରୁ ଜଣା ଯାଉଥିଲା । କିନ୍ତୁ ମୁସଲମାନ ସରଦାରଙ୍କର

ଆକାର ପ୍ରକାର ସବୁ ଏହାଙ୍କର ବିପରୀତ । ତଥାପି ଉନ୍ନତ ହେଲେହେଁ ସରଦାରଙ୍କର ଶରୀର କ୍ଷୀଣ; ସତେ ଯେପରି କି କେବଳ ଅସ୍ଥି, ମଜ୍ଜା ଓ ଚର୍ମରେ ତାଙ୍କ ଶରୀର ଗଠିତ । ସେହି ଲୌହପରି ଦୃଢ଼ ଶରୀରରେ ଅମିତ ଶକ୍ତି ଲୁକ୍‌କାୟିତ ଥିଲା । ଚକ୍ଷୁ ଦୁଇଟି ତାରକାପରି ଉଜ୍ଜ୍ୱଳ ଓ ସେଥିରୁ ଏକ ପ୍ରକାର ଦୀପ୍ତି ବାହାରୁଥିଲା । ସେ ସ୍ୱଭାବତଃ ଗମ୍ଭୀର ଓ ନିଜର ଶକ୍ତି ସମ୍ବନ୍ଧରେ ସଚେତନ ଥିଲେ ।

ଭୋଜନ ସମୟରେ ଦୁଇ ବନ୍ଧୁଙ୍କ ମଧ୍ୟରେ ଦୁଇ ଜାତିର ଖାଦ୍ୟ ଓ ପେୟ ବିଷୟରେ ଆଲୋଚନା ହେଲା । କଥା ପ୍ରସଙ୍ଗରେ ମୁସଲମାନ ସର୍‌ଦାର କହିଲେ, "ତୁମମାନଙ୍କର ପାଗଳାମି ଦେଖି ମୁଁ ବଡ଼ ବିସ୍ମିତ । ଜେରୁଜେଲମର ଗୋଟିଏ ସାମାନ୍ୟ ଜୀର୍ଣ୍ଣ କବରଖାନା ଅଧିକାର କରିବାକୁ ତୁମେମାନେ କେଉଁ ଦୂର ଦେଶରୁ ଆସି, ଏ ଘୋର ମରୁଭୂମି ପାରହୋଇ ଯୁଦ୍ଧ କରିବାରେ ବ୍ୟସ୍ତ । ଏହା ପାଗଳାମି ଛଡ଼ା ଆଉ କଣ ହୋଇପାରେ ?"

ନାଇଟ ଉତ୍ତର ଦେଲେ, "ଏ ହେଉଛି ଆମ ଖ୍ରୀଷ୍ଟିଆନ ଧର୍ମ ପ୍ରତି ଏକ ପବିତ୍ର କର୍ତ୍ତବ୍ୟ । ଧର୍ମପୀଠ ଉଦ୍ଧାର କରିବାପାଇଁ ବୀର ପରି ଯୁଦ୍ଧ କରିବାଦ୍ୱାରା ଆମେ ନିଜର ଧର୍ମ ଓ ନିଜର ପ୍ରଣୟିନୀଙ୍କ ପ୍ରତି ସମ୍ମାନ ଦେଖାଇଥାଉଁ ।"

ସର୍‌ଦାର୍‌—"ମୋ ମତରେ ଗୋଟିଏ ସ୍ତ୍ରୀ ଲୋକ ପ୍ରତି ପ୍ରେମ ବା ସମ୍ମାନ ଦେଖାଇବା ଆଉ ଏକ ପାଗଳାମି । ଆମେ ମୁସଲମାନମାନେ ଏକାଧିକ ସ୍ତ୍ରୀ ରଖିଥାଉଁ ।"

ନାଇଟ—"ମୋ ଉପରେ ଗୋଟିଏ ଗୁରୁତର ଦାୟିତ୍ୱ ନ ଥିଲେ ମୁଁ ତୁମକୁ ଆମ ଶିବିରକୁ ନେଇ ଦେଖାଇଦିଅନ୍ତି, ଆମର ସ୍ତ୍ରୀମାନେ କିପରି ? ଫ୍ରାନ୍‌ସ, ବ୍ରିଟେନ ପ୍ରଭୃତି ବିଭିନ୍ନ ଦେଶର ସୁନ୍ଦରୀ

ସ୍ତ୍ରୀ ମାନେ ନିଜ ନିଜ ସ୍ୱାମୀଙ୍କ ସହିତ ଆସି ଶିବିରରେ ଅଛନ୍ତି । କିନ୍ତୁ ବର୍ତ୍ତମାନ ମୋତେ ଗନ୍ତବ୍ୟ ପଥରେ ଯିବାକୁ ହେବ ।"

ସର୍‌ଦାର୍—"ମୁଁ ଆନନ୍ଦରେ ତୁମ ଶିବିରକୁ ଯିବାକୁ ପ୍ରସ୍ତୁତ; ହୁଏତ ପରେ କେବେ ସେ ସୁଯୋଗ ଘଟିପାରେ । ତୁମେ କହୁଛ ଯେ ଆଗକୁ ଯିବ; କିନ୍ତୁ ଜାଣ କି ସୁଲ୍‌ତାନଙ୍କ ଅନୁମତି ପତ୍ର ବିନା ଏଣିକି ଅଗ୍ରସର ହେବାର ଅର୍ଥ ମୃତ୍ୟୁ ?"

ନାଇଟ—"ମୋଠାରେ ସୁଲ୍‌ତାନ ସାଲ ଦିନଙ୍କ ସ୍ୱାକ୍ଷରିତ ମୋହରଯୁକ୍ତ ଅନୁମତି ପତ୍ର ଅଛି ।"

ଏହା ଶୁଣିଲାକ୍ଷଣି ସର୍‌ଦାର୍ ମସ୍ତକ ଅବନତ କରି ସୁଲ୍‌ତାନଙ୍କ ଉଦ୍ଦେଶ୍ୟରେ ସମ୍ମାନ ଜଣାଇଲେ ।

ସର୍‌ଦାର୍—"ମୋର ଭାଗ୍ୟ ଭଲ ଯେ ମୁଁ ତୁମକୁ ହତ୍ୟା କରି ନାହିଁ । ରାଜସ୍ୱାକ୍ଷରିତ ଅନୁମତି ପତ୍ର ପାଇଥିବା ବିଦେଶୀକୁ ହତ୍ୟା କରିଥିବା ଅପରାଧରେ ମୋର ପ୍ରାଣଦଣ୍ଡ ହୋଇଥାନ୍ତା । ଅନୁମତିପତ୍ର ଅଣିଥିବା କଥା ମୋତେ ଆଗରୁ ନ କହିଲ କାହିଁକି ?"

ନାଇଟ—"ମୋତେ ଅବସର ଦେଲ କେତେବେଳେ ? ଯାହାହେଉ ଆନନ୍ଦର କଥା, ମୁଁ ଜାଣିଲି ଯେ ଅନୁମତିପତ୍ରଟି ମୋର ଦରକାରରେ ଲାଗିବ । ମୁଁ ଶୁଣିଛି, ଏ ପଥରେ ଦସ୍ୟୁମାନଙ୍କର ଉପଦ୍ରବ ଅଧିକ । ଆଜି ରାତିରେ ମୋତେ ସନ୍ନ୍ୟାସୀ ଥିଓଡରିକଙ୍କ ଆଶ୍ରମରେ ପହଞ୍ଚିବାକୁ ହେବ । ସନ୍ନ୍ୟାସୀ ମରୁଦ୍ୱୀପରେ ବାସ କରି ଈଶ୍ୱରଙ୍କ ସେବାରେ ଜୀବନ ଅର୍ପଣ କରିଅଛନ୍ତି ।"

ସରଦାର୍ ତାଙ୍କୁ ନିରାପଦରେ ଆଶ୍ରମରେ ପହଞ୍ଚାଇ ଦେବେ ବୋଲି ସ୍ୱତଃ କହିବାରୁ ସାର୍ କେନେଥ ଧନ୍ୟବାଦ ଦେଇ କହିଲେ, "ହୁଏତ ଏଠାରେ ଖ୍ରୀଷ୍ଟିଆନ ସନ୍ନ୍ୟାସୀ ନିଜେ ବିପନ୍ନ ହୋଇପାରନ୍ତି ।"

ସରଦାର୍—"ତାଙ୍କର କିଛି ବିପଦ ଘଟିବାର ଆଶଙ୍କା ନାହିଁ । ଅବଶ୍ୟ ସେ ଅନ୍ୟ ଧର୍ମାବଲମ୍ବୀ, କିନ୍ତୁ ସେ ଏପରି ଆଚରଣ କରନ୍ତି ଯେ, କି ମୁସଲମାନ କି ଖ୍ରୀଷ୍ଟିଆନ ସମସ୍ତେ ତାଙ୍କ ପ୍ରତି ଅନୁରକ୍ତ । ତେବେ ମୋର ମନେହୁଏ, ସେ ଟିକିଏ ପାଗଳ । ଯାହା ହେଉ, ଏଣିକି ପଥ ବିପଦପୂର୍ଣ୍ଣ; ମୁଁ ତୁମକୁ ସଙ୍ଗରେ ନେଇ ତାଙ୍କ ଆଶ୍ରମରେ ଛାଡ଼ିଦେବି । ଆମ ଭିତରେ ଧର୍ମ ବିଷୟ ନେଇ ଆଲୋଚନା କରିବା ଠିକ୍ ନୁହେଁ । ଧର୍ମ ହେଲା ମୁଲ୍ଲା, ପୁରୋହିତ, ପାଦ୍ରୀମାନଙ୍କର ଇଲାକା । ଆମର ଯୁଦ୍ଧ ସହିତ ସମ୍ପର୍କ । ଚାଲ, ବାଟରେ ସେହି ଯୁଦ୍ଧ ବିଷୟ କଥାବାର୍ତ୍ତା ହୋଇ ଯିବା ।"

## ଦୁଇ : ଏକ୍ ଗାଜିର ସନ୍ନ୍ୟାସୀ

ଉଭୟେ ବୀର ନିଜ ନିଜର ପୋଷାକ ପରିଧାନ କଲେ ।

ଏହି କାର୍ଯ୍ୟରେ ଉଭୟେ ପରସ୍ପରକୁ ସାହାଯ୍ୟ କରିବାକୁ ମଧ୍ୟ କୁଣ୍ଠିତ ହେଲେ ନାହିଁ । ଅଶ୍ୱାରୋହଣ କରି ସେହି ମରୂଦ୍ୟାନ ତ୍ୟାଗ କରିବା ପୂର୍ବରୁ ସାର କେନେଥ ଉକ୍ତ କୂପରୁ ଅଞ୍ଜଳି ଜଳ ପାନ କରି ସଙ୍ଗୀ ମୁସଲମାନଙ୍କୁ ପଚାରିଲେ, "ଏହି ମରୁକୂପର ନାମ କଅଣ ? ମୁଁ ଢେର ରାଜ୍ୟର ଜଳ ପାନ କରିଛି, କିନ୍ତୁ ଏପରି ସ୍ୱଚ୍ଛ ମଧୁର ଜଳ ଅନ୍ୟ କେଉଁଠାରେ ଦେଖିନାହିଁ ।" ମୁସଲମାନ ସରଦାର୍ ଉତ୍ତର କଲେ, "ଆମେ ଏହାର ନାମ ଦେଇଛୁ 'ମରୁଭୂମିର ହୀରକ' । ନାମଟି ଯେ ଯଥାର୍ଥ, ଏଥିରେ ସନ୍ଦେହ ନାହିଁ ।"

କିଛି ସମୟ ପର୍ଯ୍ୟନ୍ତ ଉଭୟେ ନୀରବ ଭାବରେ ଅଶ୍ୱ ଚଳାଇଲେ । ସରଦାର୍ ଆଗେ ଆଗେ ପଥ ଦେଖାଉଥାନ୍ତି । କିଛି ଦୂର ଯିବା ପରେ ସରଦାର୍ କହିଲେ, "ତୁମର ନାମ କଅଣ ଜାଣିପାରେ କି ?"

ନାଇଟ୍ ଉତ୍ତର କଲେ, "ମୋର ନାମ କେନେଥ । ମୋର ସଙ୍କେତ ହେଉଛି ଚିତାବାଘ । ଅବଶ୍ୟ ନିଜ ଦେଶରେ ମୋର ଅନ୍ୟ ନାମ ଅଛି, କିନ୍ତୁ ଏହି ଧର୍ମଯୁଦ୍ଧରେ ମୋର ପରିଚୟ ହେଉଛି, ସାର୍ କେନେଥ । ତୁମର ନାମ କହିବ କି ?"

ମୁସଲମାନ ବୀର ଉତ୍ତର କଲେ, "ମୋର ନାମ ଶେର୍ କଫ୍ । ଏହି ଶବ୍ଦର ଅର୍ଥ ହେଉଛି 'ପର୍ବତର ସିଂହ' । ମୋର ଜନ୍ମସ୍ଥାନ

ହେଉଛି କୁର୍ଦ୍ଦିସ୍ତାନରେ । ଆମର ମହାମହିମ ସୁଲତାନଙ୍କର ଜନ୍ମସ୍ଥାନ ମଧ୍ୟ ସେହି କୁର୍ଦ୍ଦିସ୍ତାନରେ । ମୋ ଅଧୀନରେ ଅନେକ ହଜାର ସୈନ୍ୟ ଅଛନ୍ତି । ତୁମେ ଏପରି ଦରିଦ୍ର, ଅସହାୟ—ତେବେ ତୁମେ କେଉଁ ସାହସରେ ମୋତେ ଖ୍ରୀଷ୍ଟିଆନ ରାଜାଙ୍କ ଶିବିରକୁ ନେଇ ମହଲାମାନଙ୍କୁ ଦେଖାଇବାକୁ କହୁଥିଲ ?"

କେନେଥ ଉତ୍ତର କଲେ, "ମୁଁ ଜଣେ ନାଇଟ; ଉଚ୍ଚ କୁଳରେ ଜାତ । ରାଜାଙ୍କ ଦ୍ୱାରା ସମ୍ମାନିତ ରାଜକୀୟ କ୍ଷମତା ଛଡ଼ା ସବୁ ବିଷୟରେ ନାଇଟମାନେ ରାଜାମାନଙ୍କ ସହିତ ସମାନ ଆସନର ଅଧିକାରୀ ଏପରିକି ଇଂଲଣ୍ଡର ରାଜା ରିଚାର୍ଡ଼ ଯଦି କୌଣସି ନାଇଟର ଅସମ୍ମାନ କରନ୍ତି ତେବେ ସେ ନାଇଟ ରାଜାଙ୍କୁ ମଧ୍ୟ ଦ୍ୱନ୍ଦ୍ୱ ଯୁଦ୍ଧକୁ ଆହ୍ୱାନ କରି ପାରେ ଓ ରାଜା ତା ସହିତ ଯୁଦ୍ଧ କରିବାକୁ ଧର୍ମତଃ ବାଧ୍ୟ । ଆମ ଦେଶର ଦରିଦ୍ରତମ ନାଇଟ ରାଜକନ୍ୟାକୁ ମଧ୍ୟ ନିଜର ପ୍ରଣୟିନୀରୂପେ ଗ୍ରହଣ କରିପାରେ ଏବଂ ତାର ସମ୍ମାନ ଓ ଗୌରବ ପାଇଁ ରଣକ୍ଷେତ୍ରରେ ଅସୀମ ବୀରତ୍ୱ ପ୍ରକାଶ କରିପାରେ ।"

ଏହା ଶୁଣି ମୁସଲମାନ ସରଦାର୍ ଟିକିଏ ହସି କହିଲେ, "ତେବେ ତୁମର ଜଣେ କେହି ଉଚ୍ଚକୁଳର ପ୍ରଣୟିନୀ ଥିବ ।"

ଏପ୍ରକାର ପରିହାସରେ କେନେଥ କ୍ରୁଦ୍ଧ ହୋଇ ଉଠିଲେ । ତାଙ୍କର ମୁଖ ଆରକ୍ତ ହୋଇ ଆସିଲା । କିନ୍ତୁ ସେ ନିଜକୁ ସଂଯତ କରି କହିଲେ, "ମୋର ଯେ ପ୍ରଣୟିନୀ ଅଛି, ଏ କଥା ସତ୍ୟ । କିନ୍ତୁ ତାଙ୍କର ନାମ ବା ପରିଚୟ ପ୍ରକାଶ କରିବା ଆମ ପକ୍ଷରେ ଶିଷ୍ଟାଚାର ବିରୋଧୀ । ଥରେ ଆମ ଶିବିରକୁ ଗଲେ ଆମମାନଙ୍କର ପ୍ରଣୟ, ଯୁଦ୍ଧ ଆଉ ରାଜା ରିଚାର୍ଡଙ୍କ ବିଷୟରେ ଅନେକ କଥା ଜାଣିପାରିବ । ରାଜା ରିଚାର୍ଡ଼ ଯେଉଁ କୁଠାର ବ୍ୟବହାର କରନ୍ତି, ତାହା

ତୁଳନାରେ ମୋର ଏହି କୁଠାର ଗୋଟିଏ ପକ୍ଷୀର ପରଭଳି ମନେ ହେବ ।”

ଶେର୍ କଫ୍ କହିଲେ “ମୁଁ ରାଜା ରବର୍ଟଙ୍କ ବୀରତ୍ୱ ବିଷୟରେ ଅନେକ କଥା ଶୁଣିଛି । ତୁମେ କଣ ତାଙ୍କର ପ୍ରଜା ?”

କେନେଥ ଉତ୍ତର କଲେ, “ମୁଁ ତାଙ୍କର ପ୍ରଜା ନୁହେଁ । ମୋର ଘର ସ୍କଟଲାଣ୍ଡରେ । କେବଳ ଏହି ଧର୍ମଯୁଦ୍ଧରେ ମୁଁ ତାଙ୍କର ଆନୁଗତ୍ୟ ସ୍ୱୀକାର କରିଛି ।”

ଶେର୍ କଫ୍—“ତେବେ ସେହି ଗ୍ରେଟ ବ୍ରିଟ୍ ଖଣ୍ଡରେ ଦୁଇଜଣ ରାଜା ଅଛନ୍ତି ?”

କେନେଥ—“ତା ସତ । ଆମର ସେହି ଦୁଇଟି ରାଜ୍ୟ ମଧ୍ୟରେ ଯେ ବିବାଦ ନାହିଁ ବା ଯୁଦ୍ଧ ହୁଏ ନାହିଁ ତା ନୁହେଁ । ମାତ୍ର ପବିତ୍ର ତୀର୍ଥ ଜେରୁଜେଲମର ଉଦ୍ଧାର ପାଇଁ ଦୁଇରାଜ୍ୟର ରାଜା ମିଳିଅଛନ୍ତି ।”

ଶେର୍ କଫ—“ମୋ ମତରେ ନିଜ ରାଜ୍ୟ ବିସ୍ତାର କଥା ଭୁଲିଯାଇ ମରୁଭୂମି ଅଧିକାର କରିବା ପାଇଁ ଦୂର ଦେଶରେ ଯୁଦ୍ଧ କରିବାକୁ ଯିବା ନିର୍ବୋଧତାର କାର୍ଯ୍ୟ । ଦୁଇ ଦେଶ ଏକ ଦେଶରେ ପରିଣତ ହେବା ପୂର୍ବରୁ ଅନ୍ୟ ଦେଶକୁ ଯାଇ ଯୁଦ୍ଧ କରିବା କଣ ବିଜ୍ଞତାର ପରିଚୟକ ?”

କେନେଥ—“ମୁଁ ଏ ବିଷୟରେ ତୁମ ସଙ୍ଗେ ଏକମତ ହୋଇ ପାରୁନାହିଁ । ରବର୍ଟ ଇଂଲଣ୍ଡ ଓ ସ୍କଟଲାଣ୍ଡକୁ ଏକ ରାଜ୍ୟରେ ପରିଣତ କରିବା ପୂର୍ବରୁ ଯଦି ଏ ଧର୍ମଯୁଦ୍ଧରେ ପ୍ରବେଶ କରିନଥାନ୍ତେ, ତେବେ ପବିତ୍ର ଜେରୁଜେଲମ ତରଦାନ ପାଇଁ ମୁସଲମାନମାନଙ୍କ କବଳରେ ରହିଥାନ୍ତା । କିନ୍ତୁ ସେ କଥା ଆଲୋଚନା କରିବା ମୋପକ୍ଷରେ ଅନୁଚିତ । ମୁଁ ଜଣେ ଧର୍ମଯୋଦ୍ଧା, ଧର୍ମ ନାମରେ ମୁଁ

ଯୁଦ୍ଧ କରିବାକୁ ଆସିଛୁ । ଖ୍ରୀଷ୍ଟିଆନ ରାଜାମାନଙ୍କ ଭିତରେ ଯୁଦ୍ଧ ବିଷୟ ନେଇ ମୋର ମୁଣ୍ଡ ଖେଳାଇବି କାହିଁକି ?”

ସରଦାର୍ କେନେଥଙ୍କ ମନୋଭାବ ଜାଣିପାରିଲେ । ସେ ବୁଝି ନେଲେ ଯେ ଖ୍ରୀଷ୍ଟିଆନ ରାଜାମାନେ ଏକାଠି ଯୁଦ୍ଧ କରିବାକୁ ଆସିଥିଲେହେଁ ସେମାନଙ୍କ ମଧ୍ୟରେ ଆନ୍ତରିକ ଏକତା ନାହିଁ ।

ଦୁହେଁ ଯେତିକି ଅଗ୍ରସର ହେଲେ ପଥର ଦୃଶ୍ୟ ସେତିକି ଭିନ୍ନ ବୋଧ ହେଲା । କେନେଥ ଏହି ପରିବର୍ତ୍ତନ ବିଶେଷଭାବରେ ଲକ୍ଷ୍ୟ କରିପାରିଲେ । ସେହି ରୁକ୍ଷ ଦୃଶ୍ୟ ଦେଖି କେନେଥ ମନେ ମନେ ଈଶ୍ୱରଙ୍କ ପ୍ରାର୍ଥନା କରିବାକୁ ଲାଗିଲେ । କିନ୍ତୁ ମରୁ-ପ୍ରାନ୍ତରବାସୀ ସେହି ମୁସଲମାନ ସୈନିକ ବରଂ ଆନନ୍ଦିତ ହେଲେ । ତାଙ୍କ ମୁଖରୁ ସଙ୍ଗୀତର ଧାରା ଛୁଟିଲା । ଶେଷରେ କେନେଥ ତାଙ୍କୁ ଗୀତ ଗାଇବାକୁ ବାରଣ କରିବାକୁ ବାଧ୍ୟ ହେଲେ ।

ସରଦାର୍ ଏଥିରେ ବିସ୍ମିତ ହୋଇ ଗୀତ ଗାଇବା ବନ୍ଦ କଲେ; କିନ୍ତୁ ନୀରବ ରହିଲେ ନାହିଁ । ସେ ନିଜର ପୂର୍ବପୁରୁଷଙ୍କ ବଳ ପରାକ୍ରମକଥା ବର୍ଣ୍ଣନା କରିବାକୁ ଲାଗିଲେ । କେନେଥ ସେଥି-ପ୍ରତି କର୍ଣ୍ଣପାତ କଲେ ନାହିଁ । ଅନନ୍ଦ ଉତ୍ସାହରେ ସେ ପୁଣି ଗୀତ ଗାଇବାକୁ ଆରମ୍ଭ କରିବାରୁ କେନେଥଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା । ଏହି ଅଭଦ୍ର ଆଚରଣ ନିମନ୍ତେ ସେ ସରଦାରଙ୍କୁ ତିରସ୍କାର କରିବାକୁ ଯାଉଥିଲେ, କିନ୍ତୁ ଠିକ୍ ଏହି ସମୟରେ ସେ ଏକ ବିଚିତ୍ର ଦୃଶ୍ୟ ଦେଖିବାକୁ ପାଇଲେ । ଜଣେ ଦୀର୍ଘ କ୍ଷୀଣକାୟ ପୁରୁଷ ରୁକ୍ଷ ପ୍ରସ୍ତରମାଳା ଓ ଗୁଳ୍ମଲତା ମଧ୍ୟରେ ଦ୍ରୁତ ବେଗରେ ଆସୁଥିଲେ । ଏଭଳି ନିର୍ଜନ ପ୍ରଦେଶରେ ଜଣେ ଦୀର୍ଘଶ୍ମଶ୍ରୁଧାରୀ ବ୍ୟକ୍ତିଙ୍କୁ ଏପରି ଆସୁଥିବାର ଦେଖି କେନେଥ ପ୍ରଥମେ ଚକିତ ହୋଇଗଲେ । ମନେ ହେଲା, ଶ୍ମଶାନଭୂମିରୁ କୌଣସି ପ୍ରେତ ପୁରୁଷର ଆବିର୍ଭାବ

ହେଲା କି ? କଅଣ କରିବେସ୍ଥିର କରି ନ ପାରି ସେ କିଛି ସମୟ ନିଷ୍ଚଳ ହୋଇ ଛିଡ଼ା ହେଲେ । ମୁସଲମାନ ସୈନିକଙ୍କର ଗୀତ ବନ୍ଦ ହୋଇଗଲା । ଏହି ଅଦ୍ଭୁତ ଲୋକଟି ହଠାତ୍ ସରଦାର୍ ଉପରକୁ ଲୁଦପଡ଼ି ତାଙ୍କ ଘୋଡ଼ାଟିକୁ ଧରିପକାଇଲେ । ସରଦାର୍ ଘୋଡ଼ା ଉପରୁ ଖସି ପଡ଼ିବା ସଙ୍ଗେ ସଙ୍ଗେ ସେ ତାଙ୍କଠାରୁ ଅସ୍ତ୍ର ଶସ୍ତ୍ର ଛାଡ଼ି ନେଇ ତାଙ୍କ ଗଳାକୁ ଚିପି ଧରିଲେ । ସରଦାର୍ ବିକଳ ହୋଇ ଡାକିଲେ, "ସାର୍ କେନେଥ, ଏ ପାଗଳ ସନ୍ନ୍ୟାସୀ କବଳରୁ ମୋତେ ରକ୍ଷା କର ।"

କେନେଥଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେ ଭାବିଲେ, ଏ କ୍ଷେତ୍ରରେ ସରଦାର୍‌ଙ୍କୁ ସାହାଯ୍ୟ କରିବା ତାଙ୍କର କର୍ତ୍ତବ୍ୟ । ତେଣୁ ସେ ଏହି ସନ୍ନ୍ୟାସୀଙ୍କୁ ଲକ୍ଷ୍ୟ କରି କହିଲେ, "ଆପଣ କିଏ ମୁଁ ଜାଣେ ନାହିଁ । କିନ୍ତୁ ଆପଣ ଏହି ମୁସଲମାନ ସର୍ଦାର୍‌ଙ୍କୁ ଛାଡ଼ି ନ ଦେଲେ ମୁଁ ଆପଣଙ୍କ ସଙ୍ଗେ ଯୁଦ୍ଧ କରିବାକୁ ବାଧ୍ୟ ହେବି ।"

ସନ୍ନ୍ୟାସୀ ବିସ୍ମୟ ପ୍ରକାଶ କରି କହିଲେ, "ବଡ଼ ଆଶ୍ଚର୍ଯ୍ୟର କଥା, ଜଣେ ମୁସଲମାନ ସରଦାର୍ ପାଇଁ ଜଣେ ଖ୍ରୀଷ୍ଟିଆନ ଧର୍ମ-ଯୋଦ୍ଧା ମୋ ସଙ୍ଗେ ଯୁଦ୍ଧ କରିବାକୁ ପ୍ରସ୍ତୁତ । ଆଚ୍ଛା, ଶେର୍ କଫ୍, ଏବେ ଉଠ । ତୁମର ଅସ୍ତ୍ର ଶସ୍ତ୍ର ନିଅ । ମୁଁ ତୁମକୁ ଆଜି ମାରି ଦେଇଥାନ୍ତି, କିନ୍ତୁ ତୁମ କୋଷ୍ଠୀରୁ ଜାଣିଛି ଯେ ତୁମର ଭାଗ୍ୟ ଭଲ ।"

ଶେର୍ କଫ୍ ଭୂମିରୁ ଉଠି ନିଜର ଅସ୍ତ୍ର ଧାରଣ କଲା ପରେ କହିଲେ, "ମହାଭାଗ, ଆପଣ ଜଣେ ସାଧୁ ପୁରୁଷ, କିନ୍ତୁ ବେଳେ ବେଳେ ଆପଣଙ୍କର ମତିଭ୍ରମ ଘଟେ । ଆମ ଧର୍ମ ମତରେ ଏଭଳି ସାଧୁଙ୍କୁ ସମ୍ମାନ ଦେଖାଇବା ଉଚିତ; ମାତ୍ର ମୋ ଦେହରେ କଷ୍ଟ ହେଲେ ମୁଁ ସହି ପାରିବି ନାହିଁ । ଆଉ ସାର୍ କେନେଥ, ତୁମେ

ଜଣେ ଉତ୍ତମ ନାଇଟ ହୋଇ ମୋତେ ସାହାଯ୍ୟ କରିବାରେ ବିଳମ୍ବ କଲ କାହିଁକି ?"

କେନେଥ ଉତ୍ତର କଲେ, "ହିଁ, ମୋର ବିଳମ୍ବ ହୋଇଗଲା; କିନ୍ତୁ ମୁଁ ମନେକରିଥିଲି, ତୁମେ ଗୀତ ଗାଇ କୌଣସି ପ୍ରେତ ପୁରୁଷକୁ ଆବାହନ କରୁଥିଲ । ହୁଏତ ସେ ତୁମର ପୂର୍ବପୁରୁଷର କେହି ହୋଇଥିବେ ।"

ଶେର୍ କଫ୍—"ନା, ନା, ସେ ଆମ ପରିବାରର କେହି ନୁହନ୍ତି, ବରଂ ତୁମ ପରିବାରର । ତୁମେ ଯେଉଁ ସନ୍ନ୍ୟାସୀ ଥିଓଡରିକଙ୍କ ପାଖକୁ ଯାଉଥିଲ, ଏ ହେଉଛନ୍ତି ସେଇ ସନ୍ନ୍ୟାସୀ ।"

କେନେଥ ସନ୍ନ୍ୟାସୀଙ୍କ ଆଡ଼କୁ ତୀକ୍ଷ୍ଣଦୃଷ୍ଟି ପକାଇ କହିଲେ, "ଏ ହେଉଛନ୍ତି ଥିଓଡରିକ୍ ? ନାଁ, ତା ହୋଇ ନ ପାରେ ।"

ସନ୍ନ୍ୟାସୀ କେନେଥଙ୍କ ସନ୍ଦେହ ଦୂର କରିବା ଉଦ୍ଦେଶ୍ୟରେ କହିଲେ, "ହିଁ, ମୁଁ ହେଉଛି ଏନ୍‌ଗାଜି ଆଶ୍ରମର ସନ୍ନ୍ୟାସୀ ଥିଓଡରିକ । ମୁଁ ପ୍ରକୃତ ଖ୍ରୀଷ୍ଟିଆନମାନଙ୍କର ବନ୍ଧୁ । ମାତ୍ର ଯେଉଁମାନେ ସଇତାନର ପୂଜା କରନ୍ତି ସେମାନଙ୍କର ପରମ ଶତ୍ରୁ ।" ତାଙ୍କ ହାତରେ ଗୋଟିଏ ଲୁହା ଗୋବରସା ବାଡ଼ି ଥିଲା । କଥା କହି ସାରିଲାକ୍ଷଣି ସେ ବାଡ଼ିଟିରେ ଖଣ୍ଡିଏ ପଥରକୁ ଏପରି ଆଘାତ କଲେ ଯେ ତାହା ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ଏଥିରୁ ସନ୍ନ୍ୟାସୀଙ୍କ ଦୈହିକ ବଳର ପରିଚୟ ମିଳିଲା ।

ସେତେବେଳକୁ କେନେଥ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲେ । ସେ କଅଣ କରିବେ ସ୍ଥିର କରିପାରୁ ନ ଥିଲେ । ଏହି ସମୟରେ ଶେର୍ କଫ୍ କହିଲେ, "ଧୀର୍ କେନେଥ, ଦେଖ, ଏଇ ହେଉଛନ୍ତି ତୁମର ଏନ୍‌ଗାଜିର ସନ୍ନ୍ୟାସୀ ଥିଓଡରିକ ।"

ସାର୍ କେନେଥ—"କିନ୍ତୁ ମୁଁ ଦେଖୁଛି, ସେ ଜଣେ ପାଗଳ।"

ଶେର୍‌କପ୍—"ପାଗଳ ହେଲେ ଯେ ସାଧୁ ସନ୍ନ୍ୟାସୀ ହୋଇ ପାରିବେ ନାହିଁ, ଏପରି କିଛି ଅଛି ?"

ଥିଓଡରିକ ସେହି କଠିନ ପ୍ରସ୍ତରମୟ ସଂକୀର୍ଣ୍ଣ ପଥରେ ଦୀର୍ଘ ପଦକ୍ଷେପରେ ଚାଲିବାକୁ ଲାଗିଲେ। ଶେର୍‌କପ୍ ତାଙ୍କ ପଛେ ପଛେ ଯାଇ କେନେଥଙ୍କୁ ଜଣାଇ ଦେଲେ ଯେ ଆଜି ସନ୍ନ୍ୟାସୀଙ୍କ ଆଶ୍ରମରେ ରାତିଟି କଟାଇବାକୁ ହେବ। ସାଞ୍ଜୁ ପରିଧାନ କରିଥିବାରୁ ସାଧୁଙ୍କୁ ଅନୁସରଣ କରିବା ସେ ଦୁହିଁଙ୍କ ପକ୍ଷରେ କଷ୍ଟକର ଥିଲା। ଯାହାହେଉ ସେମାନେ କୌଣସିମତେ ସାଧୁ ଥିଓଡରିକଙ୍କ ଆଶ୍ରମରେ ପହଞ୍ଚିଲେ।

ଆଶ୍ରମଟି ଗୋଟିଏ ପ୍ରାକୃତିକ ଗୁହା ହେଲେହେଁ ସାଧୁ ସେଥିରେ କେତେକ ପରିବର୍ତ୍ତନ କରିଥିଲେ। ଏହା ନିକଟରେ ଗୋଟିଏ ଝରଣା ପ୍ରବାହିତ ହେଉଥିବାରୁ ସ୍ଥାନଟି ଶୀତଳ ବୋଧ ହେଉଥିଲା। ଆଶ୍ରମରେ ପହଞ୍ଚିଲା ପରେ ଥିଓଡରିକ ଧୀରସ୍ଥିର ଭାବରେ ଅତିଥି ଦୁହିଁଙ୍କର ରହିବାର ବ୍ୟବସ୍ଥାରେ ଲାଗିଗଲେ। ସେମାନଙ୍କୁ ଉତ୍ତମ ଖାଦ୍ୟ ଦିଆଗଲା। ସାଧୁଙ୍କର ଏପ୍ରକାର ପରିବର୍ତ୍ତନ ଦେଖି କେନେଥ ସନ୍ଦେହ କଲେ ଯେ ସେ ପ୍ରକୃତରେ ପାଗଳ ହୋଇଥିବେ। ସେ ଆହୁରି ଲକ୍ଷ୍ୟ କରି ଦେଖିଲେ ସାଧୁଙ୍କର ଆଚରଣରେ ବୀରୋଚିତ ପ୍ରବୃତ୍ତି ଅଛି; ତାଙ୍କ ଦୃଷ୍ଟି ମଧ୍ୟ ସାଧୁସନ୍ନ୍ୟାସୀଙ୍କ ଦୃଷ୍ଟି ପରି ନୁହେଁ, ଯୋଦ୍ଧାର ଦୃଷ୍ଟି ପରି।

କେନେଥ ଏହି ସାଧୁଙ୍କ ବିଷୟରେ ଆଉ କିଛି ଜାଣିବାପାଇଁ ସର୍ଦ୍ଦାର୍‌ଙ୍କୁ ପ୍ରଶ୍ନ କଲେ; କିନ୍ତୁ ଅଧିକ କିଛି ଜାଣି ପାରିଲେନାହିଁ। ଫଳତଃ ଏହି ଆଶ୍ରମର ସାଧୁ ତାଙ୍କୁ ରହସ୍ୟମୟ ବୋଧ ହେଲେ। ଏନ୍‌ଗାଜାର ଏହି ସନ୍ନ୍ୟାସୀଙ୍କୁ ଖ୍ରୀଷ୍ଟିଆନ ଜଗତର ସକଳ

ନେତୃସ୍ଥାନୀୟ ବ୍ୟକ୍ତି ଗଭୀର ଶ୍ରଦ୍ଧା ଓ ଭକ୍ତି କରୁଥିଲେ । ଯେଉଁ ରାଜନ୍ୟବୃନ୍ଦ ଧର୍ମଯୁଦ୍ଧର ଚାଳକ ଥିଲେ, ସେମାନେ ସନ୍ନ୍ୟାସୀଙ୍କ ନିକଟକୁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ବିଷୟରେ ପରାମର୍ଶ ମାଗି ସାର୍ କେନେଥଙ୍କୁ ପଠାଇଥିଲେ । କିନ୍ତୁ ସନ୍ନ୍ୟାସୀଙ୍କର ପାଗଳଭଳି ବ୍ୟବହାର ଦେଖି ସେ ସମସ୍ୟାଟି ତାଙ୍କୁ ଜଣାଇବେ କି ନା ଏହି ସଂଶୟରେ ପଡ଼ିଲେ । ଏଥିମଧ୍ୟରେ ସେ ଶେର୍ ଢଫ୍‌ଙ୍କଠାରୁ ଶୁଣିଥିଲେ ଯେ ସନ୍ନ୍ୟାସୀ ଗ୍ରହନକ୍ଷତ୍ରଙ୍କୁ ଦେଖି ଭବିଷ୍ୟତ ଜାଣିପାରୁଥିଲେ । ସେ ଶଙ୍କିତ ହୋଇ ଈଶ୍ୱରଙ୍କୁ ପ୍ରାର୍ଥନା କଲେ ଓ ତାପରେ ଶେର୍ ଢଫ୍‌ଙ୍କ ନିକଟରୁ ଟିକିଏ ଦୂରରେ ଶୟନ କଲେ ।

## ତନ : ଏନ୍‌ଗାଜିର ଆଶ୍ରମରେ

ନିଦ୍ରା ଭଙ୍ଗ ହେଲା ବେଳକୁ ସାର୍‌ କେନେଥ ଦେଖିଲେ, ସନ୍ନ୍ୟାସୀ ତାଙ୍କ ପାଖରେ ଛିଡ଼ା ହୋଇଅଛନ୍ତି । ସେ ଉଠିପଡ଼ି କିଛି କହିବାକୁ ଉଦ୍ୟତ ହେଲାକ୍ଷଣି ସନ୍ନ୍ୟାସୀ ତାଙ୍କୁ ନୀରବ ରହିବାକୁ ସଙ୍କେତ ଦେଇ ନିମ୍ନସ୍ୱରରେ କହିଲେ, "ଶେର୍‌ କଫ୍‌ କାଳେ ଶୁଣିପାରିବ, ସେଥିପାଇଁ ଚୁପ୍‌ କରି ମୋ ସଙ୍ଗରେ ଆସ । କିନ୍ତୁ ଖଣ୍ଡାଟା ସେଇଠାରେ ଥାଉ ।"

ସାର୍‌ କେନେଥ ଶେର୍‌ କଫ୍‌ଙ୍କ ପାଖ ଦେଇ ସନ୍ନ୍ୟାସୀଙ୍କ ସହିତ ଅନ୍ୟ ଗୋଟିଏ କୋଠରୀକୁ ଗଲେ । କେନେଥ ସନ୍ନ୍ୟାସୀଙ୍କ ଆଦେଶରେ ତାଙ୍କ ସହିତ ପ୍ରାର୍ଥନା କଲେ । ପ୍ରାର୍ଥନା ବେଳେ କେନେଥ ଲକ୍ଷ୍ୟ କଲେ ଯେ ସନ୍ନ୍ୟାସୀଙ୍କ ଅନ୍ତରରେ ଗୋଟାଏ ଗଭୀର ଦୁଃଖ ରହିଛି । କିନ୍ତୁ ପ୍ରାର୍ଥନା ପରେ ସେ ଦୃଢ଼ସ୍ୱରରେ ପଚାରିଲେ, "ତୁମେ ରାଜା ରିଚାର୍ଡ଼ଙ୍କଠାରୁ କିଛି ଶୁଭସମ୍ବାଦ ନେଇ ଆସିଛ ।"

କେନେଥ—"ନାଁ, ରାଜା ରିଚାର୍ଡ଼ ବର୍ତ୍ତମାନ ବିଶେଷ ପୀଡ଼ାଗ୍ରସ୍ତ । ତେଣୁ ସେ କିଛି ସମ୍ବାଦ ପଠାଇ ନାହାନ୍ତି । ଖ୍ରୀଷ୍ଟିଆନ ରାଜନ୍ୟମଣ୍ଡଳୀ ମୋତେ ପଠାଇଅଛନ୍ତି ।"

ସନ୍ନ୍ୟାସୀ ଜଳନ୍ତା ଦୀପ ଧରି ଶୋଇବା ଘରକୁ କେନେଥଙ୍କୁ ଡାକି ନେଲେ । ସେତେବେଳକୁ ଶେର୍‌କଫ୍‌ ଗଭୀର ନିଦ୍ରାରେ ନିମଗ୍ନ । ସନ୍ନ୍ୟାସୀ କହିଲେ, "ଦେଖ, ସେ କେଡ଼େ ନିଶ୍ଚିନ୍ତରେ ଏ

ଅନ୍ଧାରୁଆ କୋଠରୀରେ ଶୋଇଛୁ । କିନ୍ତୁ ମୁଁ ଜାଣେ ତାର ଭବିଷ୍ୟତ ଉଜ୍ଜ୍ୱଳ, ଅଲୋକମୟ ।”

ସନ୍ନ୍ୟାସୀ ଗୋଟିଏ ବକ୍ର ପଥରେ କେନେଥଙ୍କୁ ଅନ୍ୟ ଏକ କୋଠରୀ ନିକଟକୁ ନେଇ ଯାଇ କହିଲେ, “ପାଦରୁ ଜୋତା ବାହାର କରିଦିଅ । ଏ କୋଠରୀଟି ପବିତ୍ର । ତୁମେ ସେହି କୋଠରୀରେ ପ୍ରବେଶ କରି ଯାହା ଦେଖିବାର କଥା ଦେଖିବ । କିନ୍ତୁ ମୁଁ ସେଠାରେ ପ୍ରବେଶ କରିବାର ଯୋଗ୍ୟ ନୁହେଁ ।”

ସାର୍ କେନେଥ ଭକ୍ତିଭାବରେ ଏହି କୋଠରୀର ଦ୍ୱାରଦେଶରେ ହାତ ମାରିବା ମାତ୍ରେ ତାହା ଖୋଲିଗଲା । କୋଠରୀ ଭିତରେ କେହି ଥିଲା ପରି ଜଣା ଗଲା ନାହିଁ । ସେ କୋଠରୀରେ ପ୍ରବେଶ କରି ଦେଖିଲେ ଯେ ସେଠାରେ ଅସଂଖ୍ୟ ପ୍ରଦୀପ ଜଳୁଛି । ଆଲୋକରେ ତାଙ୍କର ଆଖି ଝଲସିଗଲା । ସେ ନିରୀକ୍ଷଣ କରି ଦେଖିଲେ, କୋଠରୀର ଏକ ପ୍ରାନ୍ତରେ ଗୋଟିଏ ବେଦୀ ଓ ତା ଉପରେ ପବିତ୍ର କ୍ରୁଶ ଚିହ୍ନ । ଏବେ ସେ ବୁଝି ପାରିଲେ ଯେ ଏହା ଭୂମି ତଳେ ଥିବା ଗୋଟିଏ ଗୀର୍ଜା । ସେ ଜାନୁପାତ କରି ପ୍ରାର୍ଥନା କରିବାକୁ ଲାଗିଲେ । ସନ୍ନ୍ୟାସୀ ତାଙ୍କୁ ସେହିଠାରେ ରହିବାକୁ ଆଦେଶ ଦେଇ କବାଟ ବନ୍ଦ କରିଦେଲେ ।

ସାର କେନେଥ୍ ଏହିସବୁ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟରେ ସ୍ତମ୍ଭୀଭୂତ ହୋଇଗଲେ । ତାଙ୍କ ମନରେ ନାନା ଚିନ୍ତା ଜାଗିଉଠିଲା । ଏହି ସମୟରେ ଘଣ୍ଟାର ମଧୁର ଧ୍ୱନି ଶୁଣାଗଲା ଓ ଏହି କୋଠରୀର ଅନ୍ୟ ଏକ ଦ୍ୱାର ଖୋଲିଗଲା । ସଙ୍ଗେ ସଙ୍ଗେ କେତେକ ମହିଳା ଶ୍ରେଣୀବଦ୍ଧ ଭାବରେ ସେହି ଦ୍ୱାର ବାଟେ କୋଠରୀରେ ପ୍ରବେଶ କଲେ । ସେମାନେ ପବିତ୍ର ବେଦୀର ଚତୁର୍ଦ୍ଦିଗରେ ପରିକ୍ରମା କରିବାକୁ ଲାଗିଲେ । ମହିଳାମାନଙ୍କ ମଧ୍ୟରେ ପୁରୋଭାଗରେ ଥିବା

ଛଅ ଜଣ ଯେ ସନ୍ନ୍ୟାସିନୀ ଦୀକ୍ଷା ଗ୍ରହଣ କରିଅଛନ୍ତି ତାହା ସେମାନଙ୍କ ବେଶଭୂଷାରୁ ଜଣା ପଡ଼ୁଥିଲା । ସେମାନଙ୍କ ପଛରେ ଥିବା ରମଣୀମାନେ ସମ୍ପୂର୍ଣ୍ଣରୂପେ ଶରୀରକୁ ବସ୍ତ୍ର ଦ୍ୱାରା ଆବୃତ କରିଥିଲେ । ସେମାନେ ପ୍ରତ୍ୟେକେ ହାତରେ କିଛି ଗୋଲାପ ଫୁଲ ଧରିଥିଲେ । ବେଦୀକୁ ପ୍ରଦକ୍ଷିଣ କଲାବେଳେ ସେମାନେ କେନେଥଙ୍କର ଏତେ ନିକଟରେ ଯାଉଥିଲେ ଯେ ବେଳେବେଳେ ସେମାନଙ୍କ ବସ୍ତ୍ରର ପ୍ରାନ୍ତଭାଗ ତାଙ୍କ ଦେହ ସ୍ପର୍ଶ କରୁଥିଲା; କିନ୍ତୁ କେହି ତାଙ୍କୁ ଲକ୍ଷ୍ୟ କଲାପରି ବୋଧ ହେଉ ନ ଥିଲା ।

ଅନ୍ୟ କେହି ଏପରି ଅବସ୍ଥାରେ ସେମାନଙ୍କୁ ଭୌତିକ ପ୍ରାଣୀ ବୋଲି ମନେ କରିଥାନ୍ତା; କିନ୍ତୁ କେନେଥ ବୁଝିପାରିଥିଲେ ଯେ ସେମାନେ ନିଶ୍ଚୟ ଉଚ୍ଚ କୁଳର ଭଦ୍ରମହିଳା ଓ ସେମାନେ ଏହି ନିର୍ଜନ ଗୀର୍ଜାରେ ସ୍ୱତନ୍ତ୍ର ଉପାସନା କରିବାକୁ ଆସିଛନ୍ତି ।

ଦ୍ୱିତୀୟବାର ବେଦୀ ପରିକ୍ରମା କଲାବେଳେ ସେମାନଙ୍କ ମଧ୍ୟରୁ ଜଣେ ଗୋଟିଏ ଗୋଲାପ ଫୁଲ ତଳେ ପକାଇ ଦେଲେ । ସେଇଟି କେନେଥଙ୍କର ପାଦ ପାଖରେ ପଡ଼ିଲା । ସେ ଚମକି ପଡ଼ିଲେ ! ମାତ୍ର ମୁହୂର୍ତ୍ତିକ ମଧ୍ୟରେ ନିଜକୁ ସମ୍ଭାଳି ନେଲେ । ତୃତୀୟବାର ପରିକ୍ରମା କଲାବେଳେ କେନେଥ ଫୁଲ ଫିଙ୍ଗିଥିବା ମହିଳାଙ୍କୁ ଦେଖିବାକୁ ଚେଷ୍ଟା କଲେ; ମାତ୍ର କିଛି ଦେଖି ପାରିଲେ ନାହିଁ । ତଥାପି ସେ ତାଙ୍କୁ ଚିହ୍ନି ପାରିଲେ । ଏ ଯେ ତାଙ୍କର ପ୍ରଣୟିନୀ— ଯାହାଙ୍କୁ ସେ ନିଜ ହୃଦୟ ସିଂହାସନରେ ଅଭିଷିକ୍ତ କରିଛନ୍ତି । ତାଙ୍କୁ ନ ଚିହ୍ନିବେ କିପରି ?

ଗୋଲାପଫୁଲଟି ପଡ଼ିବା ବେଳେ କେନେଥ କେବଳ ଗୋଟିଏ କୋମଳ ହସ୍ତର କ୍ଷଣିକ ଚାଳନା ଓ ଗୋଟିଏ ଅଙ୍ଗୁଳିରେ ଥିବା ରତ୍ନଖଚିତ ମୁଦ୍ରିକା ଦେଖିପାରିଥିଲେ । କିନ୍ତୁ ମହିଳାଙ୍କୁ

ଚଢ଼ାଇବା ପାଇଁ କେନେଥ୍‌ଙ୍କ ପକ୍ଷରେ ସେତିକି ଯଥେଷ୍ଟ ହୋଇଥିଲା । ପୁନରାୟ ବେଦୀ ପ୍ରଦକ୍ଷିଣ ବେଳେ ଜଣେ ମହିଳାଙ୍କ ହସ୍ତରୁ ଆଉ ଗୋଟିଏ ଗୋଲାପ ଫୁଲ ଆସି କେନେଥଙ୍କ ପାଦ ଦେଶରେ ପଡ଼ିଲା ।

ତାଙ୍କର ହୃଦୟର ଦେବୀ ଯେ କାହିଁ ଏ ମରୁ ରାଜ୍ୟରେ ପହଞ୍ଚିଲେ, ତାହା କେନେଥ କଳ୍ପନା କରିପାରିଲେ ନାହିଁ । ମହିଳାମାନେ ଉପାସନା ଶେଷ କରି କୋଠରୀରୁ ବାହାରିଗଲେ । ସେତେବେଳେ କେନେଥ ଲକ୍ଷ୍ୟ କଲେ ଯେ ସେମାନଙ୍କ ମଧ୍ୟରୁ ଜଣେ ତାଙ୍କ ଆଡ଼କୁ ଟିକିଏ ମସ୍ତକ ଅବନତ କରି ଚାଲିଗଲେ । ଯେ ଗୋଲାପଫୁଲ ଫିଙ୍ଗି ଥିଲେ, ଏ ହେଉଛନ୍ତି ସେହି ମହିଳା ।

ମହିଳାମାନେ କୋଠରୀରୁ ଚାଲି ଯିବା ପରେ ପରେ ଦୀପଗୁଡ଼ିକ ଲିଭିଗଲା । ଅନ୍ଧକାରମୟ ସେହି ଗୀର୍ଜାରେ କେନେଥ ଏକାକୀ ରହିଗଲେ ।

ଅନ୍ଧକାରରେ ରହି ମଧ୍ୟ ସେ ସେହି ମହିଳାଙ୍କ ଚିନ୍ତା ମନରୁ ଦୂର କରିପାରିଲେ ନାହିଁ । ଗୋଲାପଫୁଲ ଦୁଇଟିକୁ ସେ ବାରମ୍ବାର ଆଘ୍ରାଣ କରିବାକୁ ଲାଗିଲେ । ଏହି ଫୁଲକୁ ସ୍ପର୍ଶ କଲାମାତ୍ରେ ତାଙ୍କର ହୃଦୟ ଉଲ୍ଲସି ଉଠୁଥିଲା ।

ସେ ଯୁଗର ନାଇଟ ପକ୍ଷରେ ପ୍ରଣୟିନୀ ଥିଲା ତାର ହୃଦୟର ଦେବୀ—ସେ ଥିଲା ସେହି ଦେବୀଙ୍କର ଉପାସକ । ଦେବୀ ଇଚ୍ଛା ଅନୁସାରେ ଭକ୍ତକୁ ଅନୁଗ୍ରହ ଦେଖାଇପାରନ୍ତି, ଦଣ୍ଡ ମଧ୍ୟ ଦେଇ ପାରନ୍ତି । ସେହିପରି ନାଇଟ ପ୍ରତି ପ୍ରଣୟିନୀ ତୁଷ୍ଟ ହୋଇପାରନ୍ତି ବା ରୁଷ୍ଟ ହୋଇପାରନ୍ତି । ନାଇଟ ପ୍ରଣୟିନୀଙ୍କର ତୋଷ ବା ରୋଷକୁ ନତମସ୍ତକରେ ଗ୍ରହଣ କରିନେଉଥିଲା ।

କେନେଥଙ୍କ ଏହି ପ୍ରଣୟିନୀଙ୍କର ନାମ ଏଡ଼ିଥ୍ । ଇଂଲଣ୍ଡର ରାଜା ଯେଉଁ ପ୍ଲାଣ୍ଟାଜେନେଟ ପରିବାରରେ ଜନ୍ମିଥିଲେ ସେହି ପରିବାରରେ ମଧ୍ୟ ଏଡ଼ିଥଙ୍କର ଜନ୍ମ । ସମ୍ପର୍କ ଦୃଷ୍ଟିରୁ ଏଡ଼ିଥ୍ ରିଚ୍ଚାର୍ଡ଼ଙ୍କର ସାନ ଭଉଣୀ ।

ଏଡ଼ିଥ୍ କେନେଥଙ୍କର ରୂପ ଗୁଣ ବିଷୟରେ ଅନେକ କଥା ଶୁଣିଥିଲେ । ତାଙ୍କର ଶାରୀରିକ ଗଠନ, ସୌଷ୍ଠବ, ବୀରତ୍ୱ ଓ ଉଦାରତା ଲୋକମୁଖରେ ପ୍ରଶଂସିତ ହେଉଥିଲା । ଏଡ଼ିଥ୍ ଯେତିକି କେନେଥଙ୍କ ରୂପ ଗୁଣର ପ୍ରଶଂସା ଶୁଣିଲେ ସେତିକି ତାଙ୍କ ଆଡ଼କୁ ଆକୃଷ୍ଟ ହେଲେ । କିନ୍ତୁ ଏ ଦୁହିଁଙ୍କ ମଧ୍ୟରେ ସାମାଜିକ ଦୃଷ୍ଟିରେ ପାର୍ଥକ୍ୟ ଥିଲା ଖୁବ୍ ବେଶି । ଏଡ଼ିଥ୍ ଇଂଲଣ୍ଡର ବିଭବଶାଳୀ ରାଜା ରିଚ୍ଚାର୍ଡ଼ଙ୍କର ଭଗ୍ନୀ; କିନ୍ତୁ କେନେଥ ଜଣେ ସାମାନ୍ୟ ଦରିଦ୍ର ନାଇଟ ।

ସମୟେ ସମୟେ ଏଡ଼ିଥ ମନେକରୁଥିଲେ ଯେ କେନେଥଙ୍କୁ ଭଲ ପାଇବା ତାଙ୍କ ପକ୍ଷରେ ଅନୁଚିତ, ଏପରିକି ବିପଜ୍ଜନକ ମଧ୍ୟ । ସାର୍ କେନେଥ ଜଣେ ନାଇଟ ଭାବରେ ଏଡ଼ିଥଙ୍କ ସହ ସାକ୍ଷାତ କରିବାରେ ବାଧା ନଥିଲା । କିନ୍ତୁ ରାଜପରିବାରର ଏଡ଼ିଥ୍ ଯେଉଁ ସମାଜରେ ରହୁଥିଲେ, ହତଭାଗ୍ୟ କେନେଥଙ୍କର ସେଠାରେ ଆଦୌ ସ୍ଥାନ ନ ଥିଲା । ତଥାପି ଏଡ଼ିଥ୍‌ଙ୍କ ଭାବଭଙ୍ଗୀ ଓ ଆଚରଣରୁ ସୂଚନା ମିଳୁଥିଲା, ସେ କେନେଥଙ୍କ ପ୍ରତି ଅନୁରାଗିଣୀ । ଅବଶ୍ୟ ସେ କେବେ ପ୍ରକାଶ୍ୟରେ ତାଙ୍କର ଏହି ଅନୁରକ୍ତି ପ୍ରକାଶ କରିନଥିଲେ; କାରଣ ଏହାଦ୍ୱାରା କେନେଥ ତାଙ୍କୁ ହୀନ ମନେକରିବାର ଆଶଙ୍କା ଥିଲା । ଫଳରେ ଦୁହିଁଙ୍କ ହୃଦୟରେ ପ୍ରଣୟର ପବିତ୍ର ଧାରା ପ୍ରବାହିତ ହେଉଥିଲେହେଁ ସେ ଦୁଇ ଧାରାର ମିଳନ ହେଉନଥିଲା । ଦୁହିଁଙ୍କ ମଧ୍ୟରେ କେତେଥର ଦୃଷ୍ଟି ବିନିମୟ ଘଟିଥିଲେହେଁ କେବେହେଲେ କଥାବାର୍ତ୍ତା ହୋଇ ନଥିଲା ।

ନୀରବ ଓ ଅନ୍ଧକାର କୋଠରୀ ମଧ୍ୟରେ କେନେଥ କିଛି ସମୟ ଚିନ୍ତା କରିବା ପରେ ହଠାତ୍ ଦ୍ୱାର ଖୋଲିଗଲା । କେନେଥ ଦ୍ୱାର ନିକଟକୁ ଆସି ଦେଖିଲେ ଦୀପହସ୍ତରେ ସନ୍ନ୍ୟାସୀ ଦଣ୍ଡାୟମାନ । ଗୋଟିଏ ସଂକୀର୍ଣ୍ଣ ପଥରେ ସନ୍ନ୍ୟାସୀ କେନେଥଙ୍କୁ ନିଜର କ୍ଷୁଦ୍ର ଗହ୍ୱର ଭିତରକୁ ନେଇଗଲେ ।

"ମୋର ଶୋଇବାକୁ ଅବସର ନାହିଁ । ଯାଅ, ତୁମେ ଶୋଇପଡ଼ ।"—ଏତିକି କହି ସନ୍ନ୍ୟାସୀ କେନେଥଙ୍କ ପାଖରୁ ଚାଲିଗଲେ ।

କେନେଥ ଶୋଇବାକୁ ଗଲେ । କିନ୍ତୁ ସନ୍ନ୍ୟାସୀ ସମଗ୍ର ରାତି କେବଳ ପ୍ରାର୍ଥନାରେ କଟାଇଦେଲେ ।

ପ୍ରଭାତ ହୁଅନ୍ତେ କେନେଥ ଶଯ୍ୟା ତ୍ୟାଗ କରି ସନ୍ନ୍ୟାସୀଙ୍କୁ ତାଙ୍କ ଆଗମନର ଉଦ୍ଦେଶ୍ୟ ଜଣାଇଲେ । କେନେଥଙ୍କୁ ଆଶ୍ରମରେ ଆହୁରି ଦୁଇ ଦିନ ରହିବାକୁ ପଡ଼ିଲା । ଏହି ଅବକାଶରେ ଦୁହିଁଙ୍କ ମଧ୍ୟରେ ଅନେକବାର ଧର୍ମଯୁଦ୍ଧର ଗତି ବିଷୟରେ ଆଲୋଚନା ହେଲା । କେନେଥଙ୍କର ଯେଉଁ ଅନୁଚରଟି ରୋଗରେ ପଡ଼ିଥିଲା, ତାହା ପାଇଁ କି ବ୍ୟବସ୍ଥା କରାଯାଇପାରେ ସେ ବିଷୟରେ ସନ୍ନ୍ୟାସୀ କେତେକ ପରାମର୍ଶ ଦେଲେ ।

## ଚାର : ରିଚାର୍ଡ଼ଙ୍କ ପୀଡ଼ା

ବର୍ତ୍ତମାନ ଇଂଲଣ୍ଡେଶ୍ୱର ରିଚାର୍ଡ଼ଙ୍କ ଶିବିର ଆଡ଼େ ଦୃଷ୍ଟି ଦେବା ଉଚିତ । ସୈନ୍ୟଦଳ ସହିତ ସେ ଧର୍ମଯୁଦ୍ଧରେ ଯୋଗ ଦେଇ ପ୍ରତିଜ୍ଞା କରିଥିଲେ—ପବିତ୍ର ତୀର୍ଥ ଜେରୁଜେଲମ ଜୟ କରି ଫେରିବି । କିନ୍ତୁ ଯେଉଁ ଖ୍ରୀଷ୍ଟିଆନ ନରପତିମାନେ ଜେରୁଜେଲମର ଉଦ୍ଧାର ନିମନ୍ତେ ସମ୍ମିଳିତ ହୋଇଥିଲେ, ସେମାନଙ୍କ ମଧ୍ୟରେ ବାଦ ବିସମ୍ବାଦ ଫଳରେ ତାଙ୍କର ଏହି ପ୍ରତିଜ୍ଞା ରକ୍ଷା କରିବାକୁ ସେ ସମର୍ଥ ହୋଇ ପାରି ନଥିଲେ । ଅନ୍ୟ କୌଣସି ରାଜା ସାହସରେ, ଶକ୍ତିରେ କିମ୍ବା କୌଶଳରେ ତାଙ୍କର ସମକକ୍ଷ ନ ଥିଲେ । ଏହି ଧର୍ମଯୁଦ୍ଧରେ ସମସ୍ତେ ରିଚାର୍ଡ଼ଙ୍କୁ ସର୍ବାଧିନାୟକ ରୂପେ ଗ୍ରହଣ କରିଥିଲେହେଁ, ଅନେକେ ଈର୍ଷାନ୍ୱିତ ଥିଲେ । ପୁଣି ଦୁର୍ଦ୍ଦୈବ ବଶତଃ ଅନେକ ସୈନ୍ୟ ରୋଗାକ୍ରାନ୍ତ ହୋଇପଡ଼ିଥିଲେ ଓ ଅନେକ ପଳାୟନ କରିଥିଲେ ।

ମୁସଲମାନମାନଙ୍କ ନେତା ସୁଲତାନ ସାଲାଦିନ ଦେଖିଲେ ଯେ ତାଙ୍କର ସୈନ୍ୟମାନେ ଅପେକ୍ଷାକୃତ ଅଳ୍ପ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ; ଖ୍ରୀଷ୍ଟିଆନ ସୈନିକମାନଙ୍କ ସହିତ ସମ୍ମୁଖ ଯୁଦ୍ଧରେ ଜିଣିବାର ଆଶା ଅଳ୍ପ । ତେଣୁ ସେ ଖ୍ରୀଷ୍ଟିଆନ ସୈନିକ ଦଳମାନଙ୍କ ଉପରେ ଅତର୍କିତ ଆକ୍ରମଣ କରୁଥିଲେ । ଖ୍ରୀଷ୍ଟିଆନ ସୈନ୍ୟମାନେ ଖାଦ୍ୟ-ଦ୍ରବ୍ୟ କ୍ରୟ କରିବାକୁ ବା ଅନ୍ୟ ଉଦ୍ଦେଶ୍ୟରେ ଶିବିରରୁ ବାହାରକୁ ଗଲେ ସେମାନଙ୍କ ଉପରେ ଆକ୍ରମଣ ହେଉଥିଲା । ରିଚାର୍ଡ଼ ସେନାପତି ତଥା ସାଧାରଣ ସୈନିକମାନଙ୍କୁ ଉତ୍ସାହ ଦେଇ

କୌଣସିମତେ ଯୁଦ୍ଧ ଚଳାଉଥିଲେ । ବର୍ତ୍ତମାନ ରିଚାର୍ଡ଼ ଗୁରୁତର ପୀଡ଼ାଗ୍ରସ୍ତ ହୋଇଥିବାରୁ ଶିବିରରେ ଘୋର ବିଶୃଙ୍ଖଳା ଦେଖା ଦେଉଅଛି । ଶେଷରେ ରାଜାମାନେ ଏକ ମାସ ନିମନ୍ତେ ଯୁଦ୍ଧ-ବିରତି ପ୍ରସ୍ତାବ କରିବାରୁ ସୁଲତାନ ସାଲାଦିନ ସେଥିରେ ସ୍ୱୀକୃତ ହେଲେ ।

ସୈନ୍ୟମାନେ ଜେରୁଜେଲମ ଆଡ଼କୁ ଅଗ୍ରସର ହେବାର ଉଦ୍ୟମ ନକରି କେବଳ ଶିବିରକୁ ରକ୍ଷା କରିବାରେ ଲାଗିଥିବାର ଦେଖି ରିଚାର୍ଡ଼ ବିଶେଷ ଦୁଃଖିତ ହେଲେ । ରିଚାର୍ଡ଼ ସ୍ୱଭାବତଃ କୋପନ ପ୍ରକୃତିର ଲୋକ ଥିଲେ । ସେ ସୈନିକ ତଥା ନେତା-ମାନଙ୍କର ଏହି ଶିଥିଳତା ଦେଖି ଅତ୍ୟନ୍ତ କ୍ରୁଦ୍ଧ ହୋଇଉଠିଲେ—ଏପରିକି ଚିକିତ୍ସକମାନେ ତାଙ୍କ ନିକଟକୁ ଯିବାକୁ ଭୟ କଲେ । କେବଳ ଡଭଲ୍ସ ନାମକ ଜଣେ ରାଜା ନିଜ ଜୀବନ ଅପେକ୍ଷା ରିଚାର୍ଡ଼ଙ୍କ ଜୀବନକୁ ଅଧିକ ମୂଲ୍ୟବାନ୍ ମନେକରି ତାଙ୍କ ପାଖେ ପାଖେ ରହିଥିଲେ ଓ ତାଙ୍କର ସେବାରେ ନିଜକୁ ସମର୍ପଣ କରି-ଦେଇଥିଲେ ।

ଏହି ଡଭଲ୍ସ ଇଂଲଣ୍ଡର ଉତ୍ତରାଞ୍ଚଳରେ ଥିବା ଗୋଟିଏ ଜମିଦାରୀର ସାମନ୍ତ ରାଜା ଥିଲେ । ସେ ଜଣେ ପରାକ୍ରାନ୍ତ ଯୋଦ୍ଧା ଥିଲେ । ଇଂଲଣ୍ଡ ଓ ସ୍କଟଲଣ୍ଡ ଦୁଇ ଦେଶ ମଧ୍ୟରେ ଯେତେ ଯୁଦ୍ଧ ହୋଇଥିଲା, ସେ ସବୁଥିରେ ସେ ଇଂଲଣ୍ଡ ପକ୍ଷରେ ଯୁଦ୍ଧ କରି ନିଜର ବୀରତ୍ୱର ପରିଚୟ ଦେଇଥିଲେ । ତାଙ୍କର ସାହସ, ବୁଦ୍ଧି ଓ ବିଚାରଶକ୍ତି ଉପରେ ଅନେକଙ୍କର ଆସ୍ଥା ଥିଲା । ସେ ସ୍ପଷ୍ଟବାଦୀ ଓ ସ୍ୱଳ୍ପଭାଷୀ ଥିଲେ । କେବେହେଲେ କାହାର ଅନୁଗ୍ରହ ଆଶା କରୁ ନଥିଲେ । ତେଣୁ ରାଜା ରିଚାର୍ଡ଼ ତାଙ୍କୁ ବିଶେଷ ଆଦର କରୁଥିଲେ । ରିଚାର୍ଡ଼ଙ୍କର ଏ ପ୍ରକାର ଅନୁରକ୍ତି ଦେଖି ଅନେକେ ଡଭଲ୍ସଙ୍କୁ

ଈର୍ଷା କରୁଥିଲେ । କିନ୍ତୁ ନିଜ ଜୀବନକୁ ତୁଚ୍ଛ କରି ଋଗୃଡ଼ଙ୍କର ସେବା କରିବାକୁ ତାଙ୍କ ଛଡ଼ା ଅଉ କେହି ବାହାରିବାକୁ ସାହସ କରୁ ନଥିଲେ ।

ଦିନେ ସନ୍ଧ୍ୟା ସମୟରେ ଋଗୃଡ଼ ଆପଣା ତମ୍ବୁ ଭିତରେ ଶୋଇଥିଲେ । ଦେହରେ ଜ୍ୱର ଥିବାରୁ ସେ ଅସ୍ଥିର ହେଉଥିଲେ । ଦେହରୁ ଆବରଣ ଫିଙ୍ଗି ଦେଉଥିଲେ । ତାଙ୍କ ପାଖରେ ଉଭିକ୍ସ ବିଷଣ୍ଣ ମୁଖରେ ଛିଡ଼ା ହୋଇଥିଲେ । ଋଗୃଡ଼ଙ୍କ ଅସ୍ଥିରତା ଦେଖି ସେ ମନେ ମନେ କଷ୍ଟ ଅନୁଭବ କରୁଥିଲେ । ଗତ ତିନି ରାତି ହେଲା ସେ ମୁହୂର୍ତ୍ତିକ ପାଇଁ ରାଜାଙ୍କ ପାଖ ଛାଡ଼ିନାହାନ୍ତି । ରାଜାଙ୍କ ନିମନ୍ତେ ସେ ଯେ କୌଣସି ତ୍ୟାଗ କରିବାକୁ ପ୍ରସ୍ତୁତ ।

ରାଜା ଋଗୃଡ଼ଙ୍କ ତମ୍ବୁ ରୋଗୀର ଚିକିତ୍ସା ଓ ବିଶ୍ରାମ ପକ୍ଷରେ ନିତାନ୍ତ ଅନୁପଯୋଗୀ ଥିଲା । ବିଭିନ୍ନ ଜନ୍ତୁର ଚର୍ମରେ ତମ୍ବୁର ମେଜିଆ ଆଚ୍ଛାଦିତ । ତା ଉପରେ ଅସ୍ତ୍ର ଶସ୍ତ୍ର ବିକ୍ଷିପ୍ତ ହୋଇ ପଡ଼ିଥିଲା । ତିନୋଟି ବିଶାଳକାୟ କୁକୁର ନୀରବ ଭାବରେ ଶୋଇରହି ସେମାନଙ୍କ ପ୍ରଭୁଙ୍କୁ ଗୁହିଁ ରହିଥିଲେ । ଗୋଟିଏ ଛୋଟ ଟେବୁଲ ଉପରେ ତିନୋଟି ସିଂହର ମୂର୍ତ୍ତି ଖୋଦିତ ବିଶାଳ ଢ଼ାଲଟିଏ ରଖା ଯାଇଥିଲା । ତା ପାଖରେ ଇଂଲଣ୍ଡର ସ୍ୱର୍ଣ୍ଣମୟ ରାଜମୁକୁଟ । ଏହା ଛଡ଼ା ଟେବୁଲ ଉପରେ ଥିଲା ଏକ ବିଶାଳ କୁଠାର । ଏହାକୁ ଚାଳନା କରିବା ପାଇଁ ଜଗତରେ ଋଗୃଡ଼ଙ୍କ ଛଡ଼ା ଅନ୍ୟ କେହି ନଥିଲେ ।

ରାଜାଙ୍କର ଅସ୍ୱାସ୍ଥ୍ୟ ହେତୁ କେହି କୌଣସି ପ୍ରକାର ଶବ୍ଦ କରୁ ନଥିଲେ । ତମ୍ବୁ ବାହାରେ ଭୃତ୍ୟମାନେ ନୀରବରେ ଧୀର ପାଦରେ ଯିବା ଆସିବା କରୁଥିଲେ । ଋଗୃଡ଼ ଉଭିକ୍ସଙ୍କୁ କହିଲେ, "ତାହାହେଲେ କିଛି ଶୁଭ ସମ୍ବାଦ ନାହିଁ । ରାଜାମାନେ ଓ ଆମର ନାଇଟମାନେ ସମସ୍ତେ ପଙ୍ଗୁ ଅଥର୍ବ ହୋଇ ବସିଛନ୍ତି; ଅଉ ଆମର

ଭଦ୍ରମହିଳାମାନେ ରାଣୀ ଓ ଅନ୍ତଃପୁରର ଅନ୍ୟ ରମଣୀମାନଙ୍କ ସହିତ ଏନ୍‌ଗାଜିର ଆଶ୍ରମକୁ ଯାଇଛନ୍ତି । ଏପରି ବିପଦପୂର୍ଣ୍ଣ ରାଜ୍ୟରେ ସେମାନେ ଏତେ ଦୂରକୁ ଯିବା ଉଚିତ ନ ଥିଲା ।”

ଥିଓଭକ୍ସ ନମ୍ର ଭାବରେ ଉତ୍ତର କଲେ, “ମହାରାଜ, ସେମାନଙ୍କ ପାଇଁ ଚିନ୍ତାର କାରଣ ନାହିଁ । ସ୍ୱୟଂ ସୁଲତାନ ସେମାନଙ୍କ ନିରାପତ୍ତାର ଦାୟିତ୍ୱ ନେଇଅଛନ୍ତି ।”

ରାଜା କହିଲେ, “ତାହାହେଲେ ସେମାନେ ନିରାପଦ, ଏଥିରେ ସନ୍ଦେହ ନାହିଁ । ମୁଁ ଜାଣେ, ସେ ଶତ୍ରୁ ହେଲେହେଁ ଉଦାର ବୀରପୁରୁଷ । କିନ୍ତୁ ଆମର ଖ୍ରୀଷ୍ଟିଆନ ରାଜାମାନଙ୍କ କଥା ଭାବିଲା ବେଳକୁ ଦୁଃଖ ଆସୁଛି । ଫ୍ରାନ୍‌ସର ରାଜା ଫିଲିପ, ଅଷ୍ଟ୍ରିଆର ଡିଉକ ଲିଓପୋଲଡ଼୍‌, ମନସେରାଟର ମାର୍କୁଇସ କନ୍‌ରେଡ଼୍‌, ଟେମ୍ପଲାର ନାଇଟମାନଙ୍କର ନାୟକ ଗ୍ରାଣ୍ଡମାଷ୍ଟର—ଏମାନେ ସବୁ କଅଣ କରୁଛନ୍ତି ? ସେମାନଙ୍କୁ କଅଣ ଅବସାଦ ଗ୍ରାସିଯାଇଛି ? ନିଜର ପୌରୁଷ, ନିଜର ଧର୍ମ, ନିଜର କର୍ତ୍ତବ୍ୟ ସବୁ କଅଣ ଭୁଲିଗଲେ ?”

ରାଜାଙ୍କୁ ଉତ୍ତେଜିତ ଦେଖି ଥିଓଭକ୍ସ କହିଲେ, “ମହାରାଜ, ଆପଣ ଏପରି ଉତ୍ତେଜିତ ହୁଅନ୍ତୁ ନାହିଁ । ଆପଣଙ୍କର ଏହି କଥା ଶୁଣିଲେ ସୈନ୍ୟମାନେ ହତୋତ୍ସାହ ହୋଇପଡ଼ିବେ । ସମସ୍ତେ ଜାଣନ୍ତି, ରାଜା ରିଚାର୍ଡ଼ଙ୍କ ବିନା ଏହି ଧର୍ମଯୁଦ୍ଧର ଅସ୍ତିତ୍ୱ ନାହିଁ ।”

ବୋଧହୁଏ ଥିଓଭକ୍ସଙ୍କ କଥାରେ ରିଚାର୍ଡ଼ ମନେ ମନେ ଟିକିଏ ଗର୍ବ ଅନୁଭବ କଲେ । କିନ୍ତୁ କିଛି ସମୟ ପରେ କହିଲେ, “ତୁମେ ବୃଥା ମୋର ପ୍ରଶଂସା କରୁଛ । ହୁଏତ ମୋତେ ଶାନ୍ତି ଦେବା ପାଇଁ, ବିଶ୍ରାମ ଦେବା ପାଇଁ ଏପରି କହୁଛ । କିନ୍ତୁ ଆମର ତିରିଶ ହଜାର ସୈନ୍ୟ କାହିଁକି ଅଗ୍ରସର ନ ହୋଇ ବସି ରହିଛନ୍ତି ? ମୋର ପୀଡ଼ା ହେଉ ବା ମୋର ମୃତ୍ୟୁ ହେଉ, ସେଥିପାଇଁ

ଧର୍ମଯୁଦ୍ଧ ବନ୍ଦ ହେବ କାହିଁକି ? ବେଗ ହେତୁରୁ ମୁଁ ସୈନ୍ୟ ସ୍ଥଳନା କରିବାକୁ ଅକ୍ଷମ । ତେବେ ସେମାନେ ଅନ୍ୟ ଜଣେ ନେତା ସ୍ଥିର କରୁନାହାନ୍ତି କାହିଁକି ?"

ଡିଭଳକ୍ସ ଉତ୍ତର କଲେ, "ରାଜାମାନେ ସେ ବିଷୟ ଚିନ୍ତା କରୁଛନ୍ତି । ଫ୍ରାନସର ରାଜା ଫିଲିପ ଧନ, କ୍ଷମତାଆଦି ଗୁଣରେ ଆପଣଙ୍କ ନିମ୍ନରେ । ତାଙ୍କର ନାମ ପ୍ରସ୍ତାବ କରାଯାଉଛି ।"

ରିଚାର୍ଡ଼ ବ୍ୟଙ୍ଗ କରି କହିଲେ, "ଠିକ୍, ଠିକ୍ । ତେବେ ସେ ଗୋଟାଏ ଭୁଲ କରିପକାଇବାର ଆଶଙ୍କା ଅଛି । 'ଆଗେଇଚାଲ' ଆଦେଶକୁ ସେ 'ପଳାଇଯାଅ' ବୋଲି ମନେକରି ଆମକୁ ଜେରୁଜେଲମକୁ ନେବା ପରିବର୍ତ୍ତେ ଫ୍ରାନ୍ସକୁ ନେଇ ନଗଲେ ରକ୍ଷା ।"

ଡିଭଳକ୍ସ—"ଅଷ୍ଟ୍ରିଆର ଡ୍ୟୁକ୍‌ଙ୍କ ନେତା କରାଯାଇପାରେ ।"

ରିଚାର୍ଡ଼—"ହଁ, ଅଷ୍ଟ୍ରିଆର ଡ୍ୟୁକ୍ ଲିଓପୋଲଡ୍—ତାଙ୍କର ବୁଦ୍ଧିଟା ଯେପରି ସ୍ଥୂଳ, ଭୀରୁତା ମଧ୍ୟ ସେହିପରି ପ୍ରବଳ । ତାଙ୍କୁ ଯଥେଷ୍ଟ ମଦ୍ୟପାନ କରିବାକୁ ଦେଲେ, ତାଙ୍କର ଆଉ କିଛି ଦରକାର ହେବ ନାହିଁ ।"

ଡିଭଳକ୍ସ—"ତେବେ ଟେମ୍ପଲର ନାଇଟମାନଙ୍କର ନେତା ଗ୍ରାଣ୍ଡମାଷ୍ଟର ?"

ରିଚାର୍ଡ଼—"ଗ୍ରାଣ୍ଡମାଷ୍ଟର ଯୁଦ୍ଧ କଅଣ ଜାଣନ୍ତି ? କିନ୍ତୁ ଏତେ ଉଦାର ଗୁଣଶାଳୀ ସାଲାଦ୍ଦିନଙ୍କ ହାତରୁ ପବିତ୍ର ଜେରୁଜେଲମକୁ ଉଦ୍ଧାର କରି ନାନା ଅପରାଧରେ ଲିପ୍ତ ଗ୍ରାଣ୍ଡମାଷ୍ଟରଙ୍କ ହାତରେ ସମର୍ପଣ କରିବା କଅଣ ନ୍ୟାୟସଙ୍ଗତ ହେବ ?"

ଡ଼ିଭକ୍ସ—"ଆଜି ଜଣେ ଅଛନ୍ତି । ମନ୍‌ସେରାଟର ମାର୍କୁଇସ କନ୍‌ରେଡ଼ଙ୍କ ବିଷୟରେ ଆପଣଙ୍କ ମତ କଅଣ ? ଶୁଣିଛି ସେ ବୁଦ୍ଧିମାନ୍ ଓ ଜଣେ ବିଖ୍ୟାତ ଯୋଦ୍ଧା ।"

ରିଗ୍ଡ଼ର୍ଡ—"ହଁ, ଖୁବ୍ ବୁଦ୍ଧିମାନ୍, କିନ୍ତୁ କେବଳ ଆପଣାର ସ୍ୱାର୍ଥ ପାଇଁ । ପୋଷାକ ପରିବର୍ତ୍ତନ କଲାଭଳି ସେ ଦଶ ଥର ତାଙ୍କର ଆନୁଗତ୍ୟ ପରିବର୍ତ୍ତନ କରୁଥାନ୍ତି ।"

ଡ଼ିଭକସ୍—"ତେବେ ମୋର କଥାହିଁ ପ୍ରମାଣିତ ହେଲା । ଯେଉଁଠାରୁ ମୁଁ ଆରମ୍ଭ କରିଥିଲି ସେହିଠାରେ ହିଁ ଶେଷ ହେଲା । ଆପଣ ସୁସ୍ଥ ନ ହେବା ପର୍ଯ୍ୟନ୍ତ ଆମର ଜେରୁଜେଲମରେ ଉପାସନା କରିବା ଆଶା ସଫଳ ହେବ ନାହିଁ ।"

ରିଗ୍ଡ଼ର୍ଡ଼ ଅଟ୍ଟହାସ୍ୟ କରି କହିଲେ, "ମୋର ଆଶା ଥିଲା ଧର୍ମଯୋଦ୍ଧାମାନଙ୍କ ନେତୃତ୍ୱ ନେଇ ଜେରୁଜେଲମ ଅଧିକାର କରିବି । ସେ କାର୍ଯ୍ୟ ଯଦି ମୁଁ ନକରି ଅନ୍ୟ କେହି କରେ ତେବେ କଦାପି ଶାନ୍ତି ପାଇପାରିବି ନାହିଁ ।" ଏହା କହୁ କହୁ ତାଙ୍କ ମୁଖ ଆରକ୍ତ ହୋଇଗଲା, ଚକ୍ଷୁରୁ ଅଗ୍ନିକଣା ବାହାରିଲା ପରି ଜଣାଗଲା । ସେ ଉତ୍ତେଜିତ ହୋଇ ବିଛଣାରୁ ଉଠିବାକୁ ଚେଷ୍ଟା କଲେ । ଏହି ସମୟରେ ତାଙ୍କ ଶିବିର ମଧ୍ୟରୁ ମୁସଲମାନ ସୈନିକମାନଙ୍କର ବାଦ୍ୟଧ୍ୱନି ଶୁଣାଗଲା । ଘଟନା କଣ ଜାଣିବାପାଇଁ ରିଗ୍ଡ଼ର୍ଡ଼ ନିଜେ ଉଠିଥିଲେ । କିନ୍ତୁ ଡିଭକସ୍ ତାଙ୍କୁ ବିଚଳିତ ନହେବାକୁ କହି ନିଜେ ଘଟନାର ଅନୁସନ୍ଧାନ କରି ଜଣାଇବାକୁ ବାହାରିଗଲେ । ଯିବା ପୂର୍ବରୁ ରିଗ୍ଡ଼ର୍ଡ଼ଙ୍କ ତମ୍ବୁ ଦ୍ୱାରପାଖେ ବିଶ୍ୱସ୍ତ ରକ୍ଷୀମାନେ ଜଗିରହିଲେ ।

## ପାଞ୍ଚ : କେନେଥଙ୍କ ଅନୁଚର

ଏହି ଧର୍ମଯୁଦ୍ଧରେ ସ୍କଟଲାଣ୍ଡର ଅନେକ ବୀର ଯୋଗ ଦେଇ-ଥିଲେ । ସେମାନେ ଇଂଲଣ୍ଡର ପ୍ରଜା ନ ହେଲେହେଁ ଧର୍ମ ନାମରେ ଇଂଲଣ୍ଡେଶ୍ୱର ରିଚାର୍ଡ଼ଙ୍କ ନେତୃତ୍ୱ ମାନିନେଇ ଯୁଦ୍ଧ କରିବାକୁ ଆସିଥିଲେ । ଇଂଲଣ୍ଡ ଓ ସ୍କଟଲାଣ୍ଡ ଦୁଇଟି ଦେଶ ହେଲେହେଁ ପରସ୍ପର ସଂଲଗ୍ନ । ଉଭୟ ଦେଶର ଲୋକେ ଏକ ଇଂରାଜୀ ଭାଷା କହନ୍ତି ଓ କେତେକ ଇଂଲଣ୍ଡବାସୀଙ୍କର ସ୍କଟଲାଣ୍ଡରେ ଓ କେତେକ ସ୍କଟଲାଣ୍ଡ-ବାସୀଙ୍କର ଇଂଲଣ୍ଡରେ ଜମିଦାରୀ ଥିଲା । ତେଣୁ ଦୁଇ ଦେଶ ମଧ୍ୟରେ ଅତି ନିକଟ ସମ୍ପର୍କ ଥିଲା । ଇଂଲଣ୍ଡ ଓ ସ୍କଟଲାଣ୍ଡ ମଧ୍ୟରେ ଅନେକ ସମୟରେ ଯୁଦ୍ଧ ବିବାଦ ଘଟୁଥିଲା । କିନ୍ତୁ ଧର୍ମଯୋଦ୍ଧାମାନଙ୍କ ମଧ୍ୟରେ ରିଚାର୍ଡ଼ ଇଂଲଣ୍ଡର ସୈନ୍ୟ ଓ ସ୍କଟଲାଣ୍ଡର ସୈନ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖୁ ନଥିଲେ । ଉଭୟଙ୍କ ପ୍ରତି ତାଙ୍କର ସମାନ ବ୍ୟବହାର । ତେଣୁ ସମସ୍ତେ ରିଚାର୍ଡ଼ଙ୍କୁ ସମ୍ମାନ ପ୍ରଦର୍ଶନ କରିବାକୁ କୁଣ୍ଠିତ ନ ଥିଲେ । କିନ୍ତୁ ରିଚାର୍ଡ଼ ଅସୁସ୍ଥ ହୋଇ ପଡ଼ିବା ପରେ ଦୁଇ ଦେଶର ସୈନ୍ୟମାନଙ୍କ ଭିତରେ ବିବାଦ ମୁଣ୍ଡ ଟେକିଲା ।

ରିଚାର୍ଡ଼ ବହୁବାର ସ୍କଟଲାଣ୍ଡ ସହିତ ଯୁଦ୍ଧରେ ଇଂଲଣ୍ଡ ପକ୍ଷରୁ ଯୁଦ୍ଧ କରିଥିଲେ । ସ୍କଟଲାଣ୍ଡର ଲୋକଙ୍କ ପ୍ରତି ତାଙ୍କର ବିଦ୍ୱେଷ-ଭାବ ରହିଥିଲା । ସେ ମନେ ମନେ ମୁସଲମାନମାନଙ୍କୁ ଯେପରି ଘୃଣା କରୁଥିଲେ, ସ୍କଟଲାଣ୍ଡବାସୀଙ୍କୁ ମଧ୍ୟ ସେହିପରି ଘୃଣା କରୁଥିଲେ । ତଥାପି ଧର୍ମଯୁଦ୍ଧରେ ବିଜୟ ଲାଭ ପାଇଁ ସେ ଉଭୟ ଦେଶବାସୀ

ଯୋଦ୍ଧାମାନଙ୍କ ସାହାଯ୍ୟ ନିମନ୍ତେ ନିଜର ଧନ ଅକାତରରେ ବ୍ୟୟ କରୁଥିଲେ ।

ଉଭକ୍‌ସ ବର୍ଗୃଡ଼ଙ୍କ ତମ୍ବୁଠାରୁ କିଛି ଦୂର ଯାଇ ଦଳେ ମୁସଲମାନଙ୍କୁ ଦେଖିଲେ । ଏହି ଦୃଶ୍ୟରେ ତାଙ୍କର ବିରକ୍ତି ଆସିବାର କଥା । ବ୍ୟାପାରଟା କଅଣ ବୁଝିବା ପାଇଁ ସେ ନିଜର କୌଣସି ଲୋକକୁ ଦେଖି ପାରିଲେ ନାହିଁ । ଏହି ସମୟରେ ସାର୍ କେନେଥ ତାଙ୍କ ପାଖରେ ଉପସ୍ଥିତ ହେଲେ । ଉଭକ୍‌ସ ତାଙ୍କ ଉପସ୍ଥିତିକୁ ଉପେକ୍ଷା କରି ଚାଲିଯିବାକୁ ବସିଥିଲେ । ମାତ୍ର କେନେଥ ତାଙ୍କୁ ଅଭିବାଦନ ଜଣାଇ କହିଲେ, "ମହାଭାଗ, ମୋର କିଛି କହିବାର ଅଛି । ମୁଁ ରାଜାଙ୍କୁ ଆରୋଗ୍ୟ କରିବା ନିମନ୍ତେ ଉପାୟ ପାଇଛି । ସାଲାଦିନଙ୍କଠାରୁ ସମ୍ବାଦ ମଧ୍ୟ ଆଣିଛି ।"

ଉଭକ୍‌ସ ବିସ୍ମୟରେ କିଛି ସମୟ ଯାଏ କେନେଥଙ୍କୁ ଚାହିଁ ରହି କହିଲେ, "ମୁଁ ଯେତେଦୂର ଜାଣେ ତୁମେ ଡାକ୍ତର ନୁହଁ ଯେ ବର୍ଗୃଡ଼ଙ୍କର ଚିକିତ୍ସା କରିବ । ମନେରଖିଥାଅ, ଯେ ଇଚ୍ଛା ସେ ଆସି ତାର ମନମୁତାବକ ଇଂଲଣ୍ଡ ରାଜାଙ୍କର ଚିକିତ୍ସା କରି ନ ପାରେ ।"

କେନେଥ—ଆପଣଙ୍କ ସଙ୍ଗେ ବାଦାନୁବାଦ କରିବା ମୋର ଅଭିପ୍ରାୟ ନୁହେଁ । ଆମେ ଉଭୟେ ପବିତ୍ର କ୍ରୁଶ ଧାରଣ କରି ଏକ ଲକ୍ଷ୍ୟରେ ଯୁଦ୍ଧ କରିବାକୁ ଆସିଥାଉଁ । ମୋ କହିବାର ଉଦ୍ଦେଶ୍ୟ, ମୁଁ ସଙ୍ଗରେ ଜଣେ ମୁସଲମାନ ଚିକିତ୍ସକଙ୍କୁ ଆଣି ଆସିଛି । ସେ ରାଜାଙ୍କୁ ଆରୋଗ୍ୟ କରିପାରିବେ ।"

ଉଭକ୍‌ସ—ସେ ଆରୋଗ୍ୟ କରିବେ କି ରାଜାଙ୍କୁ ବିଷ ଦେଇ ହତ୍ୟା କରିବେ ? ଅବଶ୍ୟ ସେଥିପାଇଁ ତାଙ୍କୁ ନିଜ ଜୀବନ ଦେବାକୁ ପଡ଼ିପାରେ ।

କେନେଥ—ଆପଣ ସ୍ୱୀକାର କରିବେ ଯେ ସୁଲତାନ ସାଲ-ଦ୍ଦିନ ଆମର ଶତ୍ରୁ ହେଲେହେଁ, ସେ ଉଦାରମନା । ତାଙ୍କର ସତ୍ ଉଦ୍ଦେଶ୍ୟ ବିଷୟରେ ସନ୍ଦେହ କରି ଯାଇ ନପାରେ । ସେ ନିଜର ଜଣେ ଚିକିତ୍ସକଙ୍କ ସହିତ ଏହି ହକିମ୍‌ଙ୍କୁ ପଠାଇଅଛନ୍ତି । ରିଚାର୍ଡ଼ ଆରୋଗ୍ୟ ଲାଭ କରି ପୁଣି ଯୁଦ୍ଧ କ୍ଷେତ୍ରରେ ତାଙ୍କର ସମ୍ମୁଖୀନ ହୁଅନ୍ତୁ, ଏହାହିଁ ତାଙ୍କର ଇଚ୍ଛା ।

ଡିଭକ୍‌ସ—ସାଲଦ୍ଦିନଙ୍କର ଯେ କିଛି ଖରାପ ଉଦ୍ଦେଶ୍ୟ ନାହିଁ, ତା କପରି ଜଣାଯିବ ?

କେନେଥ—ମୁଁ ସେଥିପାଇଁ ଦାୟୀ ରହିଲି ।

ଡିଭକ୍‌ସ—ଏ ବ୍ୟାପାରରେ ତୁମେ ଆସିଲ କାହୁଁ ?

କେନେଥ—ମୁଁ ଗୋଟିଏ ସମ୍ବାଦ ନେଇ ଏନ୍‌ଗାଡିର ସନ୍ନ୍ୟାସୀ ଥିଓଡ଼ରିକଙ୍କ ପାଖକୁ ଯାଇଥିଲି । ସେହିଠାରେ ମୋର ଏହି ହକିମ୍‌ଙ୍କ ସହିତ ସାକ୍ଷାତ ହେଲା ।

ଡିଭକ୍‌ସ—ଅଚ୍ଛା, ସମ୍ବାଦଟା କଅଣ ମୁଁ ଜାଣିପାରେ କି ? କି ଉତ୍ତର ମିଳିଲା ?

କେନେଥ—ନାଁ, ରାଜନ୍ୟମଣ୍ଡଳୀର ସମ୍ମିଳନୀ ପକ୍ଷରୁ ମୋତେ ପଠାଯାଇଥିଲା । ତେଣୁ ମୁଁ କେବଳ ସେହି ସମ୍ମିଳନୀକୁ ଉତ୍ତର ଶୁଣାଇପାରେ ।

ଡିଭକ୍‌ସ କ୍ରୋଧ ଓ ବିରକ୍ତି ପ୍ରକାଶ କରି ଚାଲିଯାଉଥିଲେ । ତାଙ୍କ ମୁଖରେ ଗର୍ବ ଓ ଅଭିମାନର ଭଙ୍ଗୀ ।

କେନେଥ ତାଙ୍କ ଆଗକୁ ଆସି ପୁଣି ନମ୍ର ସ୍ୱରରେ କହିଲେ, "ମହାଶୟ, ମୁଁ ଏହି ଧର୍ମଯୁଦ୍ଧରେ ମୋର କର୍ତ୍ତବ୍ୟ କରି ଆସିଛି ବୋଲି ବୋଧହୁଏ ଆପଣ ସ୍ୱୀକାର କରିବେ । ଏ ଯୁଦ୍ଧରେ ମୋର ରିଚାର୍ଡ଼ଙ୍କ ପ୍ରତି ଆନୁଗତ୍ୟ ସର୍ବଦା ରହିଆସିଛି ଓ ରହିବ । ମୁଁ

ଶପଥ କରି କହିପାରେ, ଏ ମୁସଲମାନ ହକିମ୍‌ଙ୍କୁ ଆଣିବାରେ ମୋର ଏକମାତ୍ର ଉଦ୍ଦେଶ୍ୟ ହେଉଛି ରାଜାଙ୍କୁ ଆରୋଗ୍ୟ କରିବା । ଅନ୍ୟ କିଛି ଉଦ୍ଦେଶ୍ୟ ନାହିଁ ।"

ଉଭିକ୍‌ସ ଟିକିଏ ଚିନ୍ତା କରି ଧୀର ସ୍ୱରରେ ଉତ୍ତର କଲେ, "ମୋ କଥା ବିଚାର କର । ଏ ହେଉଛି ଶତ୍ରୁ ରାଜ୍ୟ । ଏ ଦେଶରେ ବିଷ ଦେଇ ଶତ୍ରୁକୁ ହତ୍ୟା କରିବା ଏକ ସାଧାରଣ ଘଟଣା । ଏପରି ସ୍ଥଳେ ଜଣେ ଅଜଣା ଅଶୁଣା ହକିମ୍ ଉପରେ ରାଜାଙ୍କର ଚିକିତ୍ସା-ଭାର ଦେବା ମୋ ପକ୍ଷରେ ଉଚିତ ହେବ କି ?"

କେନେଥ—ହକିମ୍‌ଙ୍କ କୃତିତ୍ୱର ପ୍ରମାଣ ମିଳିଛି । ମୋର ଏକମାତ୍ର ଅନୁଚର ଠିକ୍ ଏହି ରୋଗରେ ପଡ଼ିଥିଲା । ସେ ତାର ଚିକିତ୍ସା କରୁଛନ୍ତି । ତାଙ୍କ ଔଷଧ ଖାଇବା ପରେ ଭୃତ୍ୟଟି ଗାଢ଼-ନିଦ୍ରାରେ ଶୋଇଛି । ହକିମ୍ ତାଙ୍କୁ ଭଲ କରିପାରିଲେ—ରାଜାଙ୍କୁ କରି ପାରିବେ ନାହିଁ କାହିଁକି ? ପୁଣି ସ୍ୱୟଂ ସୁଲ୍‌ତାନ ସାଲାଦିନ ତାଙ୍କୁ ପଠାଇଅଛନ୍ତି । ସାଲାଦିନ ଯେ ସତ୍ୟପରାୟଣ ଏଥିରେ ସନ୍ଦେହ ନାହିଁ ।

ଏହା ଶୁଣିଲା ପରେ ଉଭିକ୍‌ସ କେନେଥଙ୍କର ସେହି ଭୃତ୍ୟକୁ ଦେଖିବାକୁ ବାହାରିଲେ । କେନେଥ ଟିକିଏ ଇତସ୍ତତଃ ହୋଇ ତାଙ୍କୁ ସଙ୍ଗରେ ନେଇ ଯାଉ ଯାଉ କହିଲେ, "ମହାଶୟ, ସ୍କଟଲଣ୍ଡର ନାଇଟମାନେ ଆପଣମାନଙ୍କ ଭଳି ସୁସଜ୍ଜିତ ତମ୍ବୁରେ ରହନ୍ତି ନାହିଁ । ତମ୍ବୁର ହୀନ ଅବସ୍ଥା ଦେଖି ମୋତେ ଦୋଷ ଦେବେ ନାହିଁ ବୋଲି ଆଶା କରେ ?"

କଥାଟି ଉଭିକ୍‌ସଙ୍କୁ ଭଲ ଲାଗିଲା ନାହିଁ । କାହାରି ଦାରିଦ୍ର୍ୟ, ଅସୁବିଧା, ଅଭାବ ଏସବୁ ଶୁଣିବାକୁ ସେ ପ୍ରସ୍ତୁତ ନ ଥିଲେ । ତେଣୁ ସେ କହିଲେ, "ଧର୍ମଯୁଦ୍ଧ କରିବାକୁ ଆସି ଯେଉଁ

ସୈନିକ ନିଜ ସୁଖସ୍ୱାଚ୍ଛନ୍ଦ୍ୟ କଥା ଚିନ୍ତା କରେ ତାକୁ ମୁଁ ଘୃଣା କରେ ।"

ସାର୍ କେନେଥ କିଛି ନକହି ଆଗେଇ ଗଲେ । ସଙ୍ଗରେ ଉଭକ୍ସ । ଏହି ନାଇଟଙ୍କର ତିରିଶଟି ତମ୍ବୁ ପାଇଁ ସ୍ଥାନ ଥିଲା ; ମାତ୍ର ଏବେ ସେଠାରେ ଗୋଟିଏ ମାତ୍ର ତମ୍ବୁ । ଉଭକ୍ସଙ୍କ ସହିତ କେନେଥ ତମ୍ବୁ ମଧ୍ୟରେ ପ୍ରବେଶ କଲେ । ତମ୍ବୁ ଭିତରେ ଦୁଇଟି ବିଛଣା ; ସେଥିରୁ ଗୋଟିକର ଅବସ୍ଥା ଅତି ଶୋଚନୀୟ । ଅନ୍ୟଟିରେ ଟିକିଏ କୋମଳ ଗଦି ପଡ଼ିଛି । ତାହା ଉପରେ ଜଣେ ରୋଗୀ ଶୋଇଛି । ଅନ୍ୟ ବିଛଣାଟି ଯେ କେନେଥଙ୍କର ତାହା ଜାଣିବାକୁ ଉଭକ୍ସଙ୍କର ବିଳମ୍ବ ହେଲା ନାହିଁ ।

ରୋଗୀ ଯୌବନ ପାର ହୋଇ ଯାଇଥିଲେହେଁ ସେ ଯେ ବଳିଷ୍ଠ ତାହା ତାଙ୍କ ଶୀର୍ଣ୍ଣ ଶରୀରରୁ ମଧ୍ୟ ସୁସ୍ପଷ୍ଟ ଜଣା ପଡ଼ି ଯାଉଥିଲା । ପାଖରେ ଗୋଟିଏ ପିଲା ଛୁଟି ସେକୁଥିଲା ଓ ଗୋଟିଏ ବାଉଁଶ ଖମ୍ବରେ ଖଣ୍ଡେ ହରିଣ ମାଂସ ଝୁଲୁଥିଲା । ରୋଗୀର ବିଛଣା ପାଖରେ ଗୋଟିଏ ପ୍ରକାଣ୍ଡ କୁକୁର । ଉଭକ୍ସ ଅନୁମାନ କରିନେଲେ ଯେ ଏହି କୁକୁର ହିଁ ହରିଣଟିକୁ ଶିକାର କରିଥିବ । କୁକୁରଟି ସାମାନ୍ୟ ଲାଙ୍ଗୁଡ଼ ହଲାଇ ଓ ଟିକିଏ ଗୁହିଁଦେଇ କେନେଥଙ୍କୁ ଅଭ୍ୟର୍ଥନା ଜଣାଇଲା । ବୋଧହୁଏ ରୋଗୀ ପାଖରେ ଶବ୍ଦ କରିବା ଅନୁଚିତ ବୋଲି ସେ ମଧ୍ୟ ଜାଣିଥିଲା ।

ବିଛଣାର ଏକ ପାର୍ଶ୍ୱରେ ମୁସଲମାନ ହକିମ୍ ବସିଥିଲେ । ତାଙ୍କର ଦୀର୍ଘ କୃଷ୍ଣବର୍ଣ୍ଣର ଶ୍ମଶ୍ରୁ ଉଦର ପର୍ଯ୍ୟନ୍ତ ଲମ୍ବିଥିଲା । ତାଙ୍କ ମସ୍ତକରେ ମେଷଲୋମର ଏକ ଦୀର୍ଘ ଟୋପି । ଶରୀର ପୋଷାକରେ ଅବୃତ ହୋଇଥିବାରୁ କେବଳ ଉଜ୍ଜ୍ୱଳ ଚକ୍ଷୁ ଦୁଇଟି ଛଡ଼ା ଅଉ କିଛି ପ୍ରାୟ ଦେଖାଯାଉ ନ ଥିଲା । ଉଭକ୍ସ ତାଙ୍କୁ ଏହି ଧ୍ୟାନସ୍ଥିତ

ଦୃଶ୍ୟ ଦେଖି ମନେ ମନେ ଦୁଃଖିତ ହେଲେ । ଏତେ ଦରିଦ୍ର ଭାବରେ ଚଳୁଥିଲେହେଁ କେନେଥ କେବେ ହେଲେ ସେଥିଲାଗି ଦୁଃଖ ପ୍ରକାଶ କରି ନଥିଲେ କି ଅଭିଯୋଗ ଜଣାଇ ନଥିଲେ । ଏହା ଭାବିଲା କ୍ଷଣି କେନେଥଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଜାତ ହେଲା । ତମ୍ବୁ ଭିତରେ ରୋଗୀର ନିଃଶ୍ୱାସ ପ୍ରଶ୍ୱାସ ଛଡ଼ା ଅନ୍ୟ କିଛି ଶବ୍ଦ ଶୁଣାଯାଉ ନଥିଲା ।

ଉଭକ୍ସ କହିଲେ, "ସାର୍ କେନେଥ, ଆପଣଙ୍କୁ ଏହି ରୋଗୀପାଇଁ କିଛି କରିବାକୁ ପଡ଼ିବ । ତା ପାଇଁ ଉତ୍ତମ ଖାଦ୍ୟ ଦରକାର ।"

ହକମ୍ ରୋଗୀ ଉପରେ ଟିକିଏ ହାତ ରଖି ଉଭକ୍ସ ଓ କେନେଥଙ୍କୁ ନୀରବ ରହିବାକୁ ସଙ୍କେତ ଦେଲେ । ତତ୍ପରେ ଉଭୟଙ୍କର ହାତ ଧରି ତମ୍ବୁ ବାହାରକୁ ଗଲେ ।

ହକମ୍ କହିଲେ, "ରୋଗୀର ପୂର୍ଣ୍ଣ ବିଶ୍ରାମ ଲୋଡ଼ା । ତାର ନିଦ୍ରାରେ ବ୍ୟାଘାତ ଦେବା ଆଦୌ ଉଚିତ ନୁହେଁ । ଆପଣମାନେ ସନ୍ଧ୍ୟାବେଳକୁ ଆସିବେ । ସେତେବେଳକୁ ସେ ପୂରା ଆରୋଗ୍ୟ ଲାଭ କରିଥିବ ଓ ଆପଣଙ୍କ ସଙ୍ଗେ ଯଥେଷ୍ଟ କଥାବାର୍ତ୍ତା କରି ପାରିବ ।"

ବାହାରେ ଠିଆ ହୋଇ ସାର୍ କେନେଥ ଓ ଉଭକ୍ସ କୁକୁରଟିର ଗତିବିଧି ଲକ୍ଷ୍ୟ କରୁଥିଲେ । ଉଭକ୍ସ କହିଲେ, "କୁକୁରଟି ଚମତ୍କାର । ହଁ, ଗୋଟିଏ କଥା ସ୍ମରଣ ହେଲା । ତୁମେ ଜାଣିଥିବ, ରାଜା ରିଚାର୍ଡ଼ଙ୍କ ଅନୁମତି ବିନା ରାଜାମାନଙ୍କଛଡ଼ା ଅନ୍ୟ କେହି ଶିକାରୀ କୁକୁର ରଖିବା ନିଷିଦ୍ଧ । ମୁଁ ଏହା କହିଲି ବୋଲି କିଛି ମନେ କରିବ ନାହିଁ । ମୁଁ ତୁମ ପାଇଁ ରାଜାଙ୍କଠାରୁ ଗୋଟିଏ ଅନୁମତି ପତ୍ର କରାଇଦେବି ।"

କେନେଥ ମନେ ମନେ ଅସନ୍ତୁଷ୍ଟ ହେଲେହେଁ ଭଦ୍ରତା ପ୍ରକାଶ କରି କହିଲେ, "ସେଥିପାଇଁ ମୁଁ ଆପଣଙ୍କୁ ଧନ୍ୟବାଦ ଦେଉଛି । ମୁଁ ରାଜା ରିଚାର୍ଡ଼ଙ୍କ ଅଧୀନରେ ଯୁଦ୍ଧ କରୁଛି ସତ; କିନ୍ତୁ ତାଙ୍କର ଶିକାର ଆଇନ ମଧ୍ୟ ମୋତେ ମାନିବାକୁ ପଡ଼ିବ ବୋଲି ଜାଣି ନଥିଲି । ଆପଣ ତ ମୋର ତମ୍ବୁ ଦେଖିଲେ— ରସ୍‌ୱାଲ ନ ଥିଲେ ଆମେ ବୋଧହୁଏ ଉପବାସରେ ରହୁଥାନ୍ତୁ । ସେ ହରିଣ ଶିକାର କରି ଆମର ପ୍ରଧାନ ଖାଦ୍ୟ ଯୋଗାଇଥାଏ ।"

ଡ଼ଭକ୍‌ସ କୁକୁର ପ୍ରସଙ୍ଗ ଏତିକିରେ ବନ୍ଦ କରିଦେଲେ ଓ ସୁଲତାନ ରାଜା ରିଚାର୍ଡ଼ଙ୍କ ପାଖକୁ ଲେଖିଥିବା ଚିଠିଟି ନେଇ ଚାଲିଗଲେ ।

## ଛଅ : ରାଜାମାନଙ୍କର ବିଚାର

ତମ୍ବୁ ଭିତରେ ପୀଡ଼ାଗ୍ରସ୍ତ ରାଜା ରିଚାର୍ଡ଼ ନିଜ ଶଯ୍ୟାରେ ଶୋଇଛନ୍ତି । ପାଖରେ ଡିଭିକ୍‌ସ ଦଣ୍ଡାୟମାନ । ରାଜା କହିଲେ, "ତୁମେ ଯାହା କହିଲ ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ସ୍କଟଲାଣ୍ଡର ସେହି ନାଇଟ ଯେ ବିଶ୍ୱସ୍ତ, ସେ ବିଷୟରେ ତୁମେ କଅଣ ନିଃସନ୍ଦେହ ? ସୈନିକଭାବରେ ତାର କାର୍ଯ୍ୟରେ ମୁଁ ସନ୍ତୁଷ୍ଟ । ଯୁଦ୍ଧ କ୍ଷେତ୍ରରେ ମୁଁ ତାର ବୀରତ୍ୱ ସ୍ୱଚକ୍ଷୁରେ ଦେଖିଛି । ମୁଁ ଏଥି ପୂର୍ବରୁ ତାକୁ ପୁରସ୍କୃତ କରିଥାନ୍ତି ; କିନ୍ତୁ ମୋର ଧାରଣା ଲୋକଟା ଟିକିଏ ଅତିମାତ୍ରାରେ ଗର୍ବୀ ।"

ରାଜାଙ୍କ ମୁଖରୁ ତାଙ୍କ ଅସନ୍ତୋଷର ସୂଚନା ପାଇ ଡ଼ିଭିକ୍‌ସ କହିଲେ, "ମହାରାଜ, କ୍ଷମା କରିବେ । ତାର ଏହି ଗର୍ବକୁ ଆପଣ ପ୍ରକାରାନ୍ତରେ ଉତ୍ସାହିତ କରିଛନ୍ତି । କେବଳ ତାକୁହିଁ ଗୋଟିଏ ଶିକାରୀ କୁକୁର ରଖିବାକୁ ଅନୁମତି ଦେଇଛନ୍ତି ।"

ରାଜା ଏ ବିଷୟରେ ଅଉ କିଛି ନକହି କେବଳ ହସି ଦେଲେ । ବୋଧହୁଏ, ଏପରି ସାମାନ୍ୟ ବିଷୟ ଉଠାଇବା ଉଚିତ ନୁହେଁ ବୋଲି ଏହି ହାସ୍ୟଦ୍ୱାରା ଜଣାଇ ଦେଇ କହିଲେ, "ହଁ, ସେ ମୁସଲମାନ ହକିମ୍‌ଙ୍କ କଥା କଅଣ ହେବ ? କେନେଥ କିପରି ତାଙ୍କୁ ଭେଟିଲା ?"

ଡ଼ିଭିକ୍‌ସ—"ମହାରାଜ, ସେ ସ୍କଟଲାଣ୍ଡର ଲୋକଟାକୁ ଏନ୍‌ଗାଡ଼ିର ଆଶ୍ରମକୁ ପଠାଯାଇଥିଲା ।"

ରତ୍ନର୍ଡ଼ କ୍ରୋଧରେ ଗର୍ଜନ କରି କହିଲେ, "କିଏ ତାକୁ ପଠାଇଥିଲା ? କାହିଁକି ପଠାଇଥିଲା ? ଆମର ରାଣୀ ମୋର ରୋଗ ମୁକ୍ତି ନିମନ୍ତେ ପ୍ରାର୍ଥନା କରିବାକୁ ଏନ୍‌ଗାଡ୍ଡି ଯାଇଥିଲେ । ଏପରି ସମୟରେ ଜଣେ ଲୋକଙ୍କୁ ସେଠାକୁ ପଠାଇବାର ଦୁଃସାହସ କିଏ କଲା ?"

ରାଜାଙ୍କର ଶରୀର ରାଗରେ କମ୍ପମାନ । ଊଭକ୍‌ସ ରାଜାଙ୍କର କ୍ରୋଧ ଦେଖି ଭୟ କରିଗଲେ । ସେ କହିଲେ, "ମହାରାଜ, ରାଜନ୍ୟମଣ୍ଡଳୀର ସମ୍ମିଳନୀ ପକ୍ଷରୁ ତାକୁ ପଠାଯାଇଥିଲା । ମହାରାଣୀ ଯେ ଏନ୍‌ଗାଡ୍ଡିରେ ଅଛନ୍ତି ତାହା ଶିବିରର କେହି ଜାଣନ୍ତି ନାହିଁ ।"

ରାଜା—ଅଚ୍ଛା, ସେ କଥା ପରେ ଅନୁସନ୍ଧାନ କରାଯିବ । ଏବେ ସେ ହକିମ୍‌ଙ୍କ ଆସିବା କଥା କହ ।

ଊଭକ୍‌ସ—ଏନ୍‌ଗାଡ୍ଡିକୁ ଯିବାବେଳେ ବାଟରେ କେନେଥର ଶେର୍ କଫ୍ ସଙ୍ଗେ ଭେଟ ହେଲା । ମୁସଲମାନ ସରଦାର ଶେର୍ କଫ୍ ଆପଣଙ୍କର ରୋଗ ହୋଇଥିବା ଶୁଣି ସୁଲତାନଙ୍କୁ ସମ୍ବାଦ ଦେବ ବୋଲି କହିଥିଲା । ତେଣୁ ସାଲାଦିନ ନିଜ ହକିମ୍‌କୁ ପଠାଇଛନ୍ତି ।

ରତ୍ନର୍ଡ଼ ସାଲାଦିନଙ୍କ ପତ୍ରଟି ଊଭକ୍‌ସଙ୍କୁ ପଢ଼ି ଶୁଣାଇ କହିଲେ, "ବେଶ୍, ମୋତେ ସେହି ହକିମ୍ ଚିକିତ୍ସା କରିବେ । ସାଲାଦିନ ଲେଖିଛନ୍ତି, ମୁଁ ଭଲ ହୋଇଗଲେ ପୁଣି ଯୁଦ୍ଧ କ୍ଷେତ୍ରରେ ଶତ୍ରୁ ଭାବରେ ତାଙ୍କର ଭେଟ ପାଇବି । ପ୍ରସ୍ତାବଟି ଯେ ଉଦାର ସେଥିରେ କିଛି ସନ୍ଦେହ ନାହିଁ । ଶୀଘ୍ର ଯାଇ ହକିମ୍‌ଙ୍କୁ ଡାକି ଆଣ । ଆଉ ବିଳମ୍ବ କାହିଁକି ?"

ଊଭକ୍‌ସ—ମହାରାଜ, ହକିମ କେନେଥର ଅନୁଚରକୁ ଔଷଧ ଦେଇଅଛନ୍ତି । ତାର ଫଳ କଅଣ ହେଉଛି ଦେଖିବା

ଯାଏ ଅପେକ୍ଷା କରିବା ଉଚିତ । ଆପଣଙ୍କ ଜୀବନ ମୂଲ୍ୟବାନ୍ । ଆପଣଙ୍କ ଉପରେ ହିଁ ସମଗ୍ର ଧର୍ମ ଯୁଦ୍ଧର ଫଳାଫଳ ନିର୍ଭର କରେ ।

ରିଚାର୍ଡ଼—ତେବେ ଯାଇ ଔଷଧର ଫଳାଫଳ ଦେଖ । ମାତ୍ର ମୁଁ ଏପରି ବିଛଣାରେ ପଡ଼ି ପଡ଼ି ଅସ୍ଥିର ହେଲିଣି । ମନ ହେଉଛି ଔଷଧ ଖାଇ ସୁସ୍ଥ ହେବି—ଅଥବା ମରିବି । କିନ୍ତୁ ବିଛଣାରେ ଶୋଇ ଜୀବନ୍ତ ମରଣ ସହି ପାରିବି ନାହିଁ ।

ଉଇଲ୍‌ସ ଯାଉ ଯାଉ ବାଟରେ ଟାୟାରର ବିଶପଙ୍କ ଭେଟିଲେ । ରାଜାଙ୍କ ମୁସଲମାନ ହକିମ୍‌ଙ୍କ ଠାରୁ ଔଷଧ ଦେବା ନିରାପଦ କି ନା, ଖ୍ରୀଷ୍ଟିଆନ ଧର୍ମ ଦୃଷ୍ଟିରୁ ମୁସଲମାନର ଔଷଧ ଖାଇବା ଉଚିତ କି ନା, ଏ ବିଷୟରେ ବିଶପଙ୍କ ମତ ପଚାରିବାରୁ ସେ କହିଲେ—ଅନ୍ୟ ଧର୍ମର ଲୋକ ହାତରୁ ଔଷଧ ଖାଇବାରେ ଖ୍ରୀଷ୍ଟିଆନ ଧର୍ମରେ କୌଣସି ନିଷେଧ ନାହିଁ, କିନ୍ତୁ ଏପରି ଔଷଧ ଖାଇବା ନିରାପଦ କି ନା ତାହା ଜାଣିବାକୁ ହେଲେ କେନେଥଙ୍କ ଭୃତ୍ୟକୁ ଦେଖିବା ଉଚିତ ହେବ । ତେଣୁ ବିଶପଙ୍କ ସଙ୍ଗରେ ନେଇ ଉଇଲ୍‌ସ କେନେଥଙ୍କ ତମ୍ବୁ ନିକଟକୁ ଗଲେ । କାଳେ ରୋଗ ଡେଇଁବ, ଏହି ଭୟରେ ଉଇଲ୍‌ସ ତମ୍ବୁ ଭିତରେ ପ୍ରବେଶ ନ କରି ବାହାରେ ରହିଲେ ।

ବିଶପ ତମ୍ବୁ ଭିତରକୁ ଯାଇ ଦେଖିଲେ, ସାର କେନେଥ ନାହାନ୍ତି; ହକିମ୍ ରୋଗୀର ଶଯ୍ୟା ପାଖରେ ବସିଛନ୍ତି । ବିଶପଙ୍କର ବହୁମୂଲ୍ୟ ପୋଷାକ ଓ ଦୀର୍ଘ ଶରୀର ହକିମ୍‌ଙ୍କ ଚକ୍ଷୁରେ ପଡ଼ିଲା । ମାତ୍ର ସେ ମୁହୂର୍ତ୍ତେ ମାତ୍ର ତାଙ୍କୁ ଗୁହାରି ଦେଇ ବାହାରକୁ ଚାଲି ଆସିଲେ ।

ବିଶପ ହକିମ୍‌ଙ୍କୁ ପଚାରିଲେ, "ତୁମର ଔଷଧ ଯେ ଗୁଣକାରକ ଓ ନିରାପଦ ତାହାର ପ୍ରମାଣ କଣ ?"

ହକମ୍ ଶାନ୍ତ ଭାବରେ ଉତ୍ତର କଲେ, "ରୋଗୀ ଆରୋଗ୍ୟ ଲାଭ କଲେ ଚିକିତ୍ସକର କୃତିତ୍ୱ ଜଣାପଡ଼େ । ଏଇଠାରେ ଅପେକ୍ଷା କରନ୍ତୁ । ରୋଗୀ ଯେ ରୋଗମୁକ୍ତ ହୋଇଛି, ତାର ପ୍ରମାଣ ପାଇ ପାରିବେ ।"

ଏହା କହି ସେ ଭୂମିରେ ଜାନୁପାତପୂର୍ବକ ଅଲ୍ଲାଙ୍କୁ ପ୍ରାର୍ଥନା କଲେ । ଡ଼ିଭିକ୍ସ ଓ ବିଶପ ନୀରବରେ ଛିଡ଼ା ହୋଇ ରହିଲେ । ପ୍ରାର୍ଥନା ପରେ ସେ ତମ୍ବୁ ଭିତରେ ପ୍ରବେଶ କରି ରୋଗୀକୁ ନିଦରୁ ଉଠାଇଲେ । ସେ ପ୍ରଥମେ ଆଖି ଖୋଲି ଚାରି ଆଡ଼କୁ ଚାହିଁଲା । ସେ ଜାଣି ପାରିଲା ଯେ ତାକୁ ଦେଖିବାକୁ ଆସିଥିବା ଲୋକ ଦୁଇ ଜଣ କୌଣସି ବଡ଼ ଲୋକ ହେବେ । ସାର୍ କେନେଥ କୁଆଡ଼େ ଯାଇଛନ୍ତି ବୋଲି ସେ ପ୍ରଶ୍ନ କଲା ।

ଡ଼ିଭିକ୍ସ ବିଶପଙ୍କୁ କହିଲେ, "ଏ ବଡ଼ ଅଦ୍ଭୁତ କଥା । ଲୋକଟି ସମ୍ପୂର୍ଣ୍ଣ ରୋଗମୁକ୍ତ ହୋଇଯାଇଛି । ମୁଁ ଶୀଘ୍ର ହକିମ୍‌ଙ୍କୁ ରାଜାଙ୍କ ପାଖକୁ ନେଇଯାଏ ।"

କିନ୍ତୁ ହକମ୍ କହିଲେ, "ଟିକିଏ ଅପେକ୍ଷା କରିବାକୁ ହେବ । ଜଣକର ଚିକିତ୍ସା ନ ସରୁଣୁ ଆଉ ଜଣକର ଚିକିତ୍ସା ଆରମ୍ଭ କରି ପାରିବି ନାହିଁ । ଲୋକଟିକୁ ଆଉ ଏକ ପାନ ଔଷଧ ଦେବାକୁ ହେବ । ଏହା କହି ସେ ଗୋଟିଏ ଜଳ ପାତ୍ରରେ ନିଜ ଥଳିରୁ କୌଣସି ଜିନିଷ ବୁଡ଼ାଇ ସେହି ପାଣି ରୋଗୀକୁ ଦେଲେ । ରୋଗୀ ତାହା ପିଇଦେଲା ।

ବିଶପ ପ୍ରଶ୍ନ କଲେ, "ଏଇ ସାମାନ୍ୟ ଔଷଧରେ ଆପଣ ରାଜାଙ୍କୁ ଆରୋଗ୍ୟ କରି ପାରିବେ କି ?

ହକମ୍ ଉତ୍ତର କଲେ, "ଏଇ ଔଷଧରେ ଯଦି ଦରିଦ୍ର ଭୃତ୍ୟଟିଏ ରୋଗମୁକ୍ତ ହୋଇପାରିଲା, ତାର ସାହାଯ୍ୟରେ ରାଜା

ଆରୋଗ୍ୟ ନ ହେବେ କାହିଁକି ? ଈଶ୍ୱର ଧନୀ ଦରିଦ୍ର, ରାଜା ପ୍ରଜା, ନବାବ ଫକୀର ସମସ୍ତଙ୍କୁ ଏକ ଉପାଦାନରେ ଗଢ଼ିଅଛନ୍ତି ?"

ସେମାନେ ବାହାରିଯିବା ବେଳକୁ ରୋଗୀ ପୁଣି ପଚାରିଲା— ମୋର ପ୍ରଭୁ ସାର୍ କେନେଥ କାହାନ୍ତି ?

ବାଣପ କହିଲେ—ସେ ଗୋଟିଏ ଦୂର ସ୍ଥାନକୁ ଯାଇଅଛନ୍ତି । ଫେରିବାକୁ କିଛି ଦିନ ଲାଗିପାରେ ।

ଉଭକ୍ସ କହିଲେ, "ନା ନା, ସେ ଫେରି ଆସିଲେଣି । ବର୍ତ୍ତମାନ ସେ ତୁମ ପାଖକୁ ଆସିବେ ।"

ଲୋକଟି ପୁଣି ଶୋଇପଡ଼ିଲା ।

ଯିବା ବାଟରେ ବାଣପ କହିଲେ—ସାର୍ କେନେଥ ଫେରି ଆସିଛନ୍ତି ବୋଲି ଆପଣ କହିଲେ—ଏହା କଣ ସତ୍ୟ, ନାଁ କେବଳ ତାକୁ ଆଶ୍ୱାସନା ଦେବାପାଇଁ ଏପରି କହିଲେ ?

ଉଭକ୍ସ—ହଁ, ସେ ପ୍ରକୃତରେ ଫେରି ଆସି ଅଛନ୍ତି । ଏଇ ଘଣ୍ଟାକ ପୂର୍ବରୁ ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା ହୋଇଥିଲି । ସେ ତ ଏଇ ହକିମଙ୍କୁ ସଙ୍ଗରେ ନେଇ ଆସିଛନ୍ତି । ତାଙ୍କ ଯିବା ବା ଆସିବାରେ କିଛି ଗୁରୁତ୍ୱ ଅଛି ନାଁ କଣ ?

ବାଣପ—ହଁ ତାଙ୍କର ଯିବା ହେତୁ ଅନେକ କଥା ହୋଇ ଯାଇଛି । ବୋଧହୁଏ ଗୋଟାଏ କିଛି ଗୁରୁତର ପ୍ରମାଦ ଘଟିଛି । ସେ ଏବେ କୁଆଡ଼େ ଯାଇଛନ୍ତି ?

ଦୁହେଁଯାକ ତମ୍ବୁ ଭିତରକୁ ଯାଇ ବାଳକ ଭୃତ୍ୟଠାରୁ ଶୁଣି ପାରିଲେ ଯେ ରାଜା କେନେଥଙ୍କୁ ଡକାଇ ନେଇ ଅଛନ୍ତି । ଏଥିରେ ବାଣପ ଓ ଉଭକସ ଉଭୟେ ଘୋର ବିସ୍ମୟ ପ୍ରକାଶ କଲେ ।

ଏକାକୀ କେନେଥଙ୍କୁ ରାଜା କାହିଁକି ଡମ୍ଭୁକୁ ଡକାଇ ପାରନ୍ତି ? ଦୁହିଁଙ୍କ ମଧ୍ୟରେ ଏ ବିଷୟରେ ନାନା ଜଳ୍ପନା କଳ୍ପନା ହେଲା । ଶେଷରେ ହାକମଙ୍କୁ ରାଜାଙ୍କ ପାଖକୁ ନେଇ ଯିବାର ସ୍ଥିର ହେଲା । ହାକମ୍ ଚାକରୀ କରିବେ କି ନାଁ। ସେକଥା ମୀମାଂସା କରିବାର ଭାର ରାଜାଙ୍କ ଉପରେ ଛାଡ଼ି ଦେବାକୁ ଦୁହେଁଯାକ ଉଚିତ ମନେ କଲେ ।

## ସାତ : ରାଜାଙ୍କ ତପସ୍ୟା

ହ୍ୱିକମ୍‌ଙ୍କ ଆସିବାରେ ବିଳମ୍ବ ହେଉ ଥିବାର ଦେଖି ରାଜା ଧୈର୍ଯ୍ୟ ଧରି ପାରି ନଥିଲେ । ତେଣୁ ସେ ସାର୍ କେନେଥଙ୍କୁ ଡାକି ପଠାଇଥିଲେ । କେନେଥ ତମ୍ବୁରେ ପ୍ରବେଶ କରି ଜାନୁପାତ ପୂର୍ବକ ସମ୍ମାନ ପ୍ରଦର୍ଶନ କଲେ ଓ ଦଣ୍ଡାୟମାନ ହୋଇ ରାଜାଙ୍କ ଆଦେଶକୁ ଅପେକ୍ଷା କରି ରହିଲେ ।

ରାଜା କହିଲେ, "ସାର୍ କେନେଥ, ଯୁଦ୍ଧକ୍ଷେତ୍ରରେ ତୁମର ବୀରତ୍ୱ ଦେଖି ମୁଁ ଅତିଶୟ ପ୍ରୀତ ହୋଇଅଛି । ଯଦି ତୁମେ ଏତେ ଦୂର ଗର୍ବିତ ହୋଇ ନଥାନ୍ତ ତେବେ ଏତେବେଳକୁ ତୁମ ବୀରତ୍ୱର ପୁରସ୍କାର ମଧ୍ୟ ପାଇଥାନ୍ତ । ମୁଁ ଯାହା ଶୁଣୁଛି ସେ ବିଷୟରେ ତୁମର କଅଣ କହିବାର ଅଛି କହ ।"

କେନେଥ କଅଣ କହିବାକୁ ଚେଷ୍ଟା କରୁଥିଲେ, କିନ୍ତୁ ତାଙ୍କର ତୁଣ୍ଡରୁ କଥା ବାହାରିଲା ନାହିଁ । ତାଙ୍କର ମନେପଡ଼ଗଲା, ରାଜାଙ୍କ ଭଉଣୀ ଏଡ଼ିଥ୍ ତାଙ୍କର ମାନସ ପ୍ରତିମା ପ୍ରଣୟିନୀ ।

ରାଜା ପୁଣି କହିଲେ, "ତୁମ ଭଳି ଜଣେ ବୀର ନାଇଟ ବିନାନୁମତିରେ ଶିକାରୀ କୁକୁରଟିଏ ରଖିବା ଅପରାଧ । କ୍ଷମା ଦିଆଯାଇ ପାରେ । କିନ୍ତୁ ସେ କଥା ମୁଁ କହୁନାହିଁ । ମୁଁ ଜାଣିବାକୁ ଚାହେଁ କାହାର ଅଦେଶରେ ତୁମେ ସମ୍ବାଦ ନେଇ ଏନ୍‌ଗାଡ଼ି ଆଶ୍ରମକୁ ଯାଇଥିଲ ?"

ବିନୀତ ଭାବରେ କେନେଥ ଉତ୍ତର କଲେ, "ରାଜନ୍ୟ ମଣ୍ଡଳୀର ପରିଷଦ ମୋତେ ପଠାଇଥିଲେ ।"

ରାଜାଙ୍କର ଓଠ ଥର ଉଠିଲା । ସେ ସିଂହ ଗର୍ଜନ ଭଳି ସ୍ୱର କହିଲେ—ମୋତେ ନ ପଗ୍ଚରି ଏପରି ଆଦେଶ ଦେବାକୁ କାହାର ସାହସ ହେଲା ?

କେନେଥ—ମୁଁ ଧର୍ମଯୁଦ୍ଧରେ ଜଣେ ସାମାନ୍ୟ ସୈନିକ; ଆଦେଶ ପାଳନ କରିବା ମୋର କର୍ତ୍ତବ୍ୟ । ନେତାମାନଙ୍କ ଆଦେଶ ଉଚିତ କି ଅନୁଚିତ ତା ବିଚାର କରିବା ମୋର ସୀମା ବହିର୍ଭୂତ କାର୍ଯ୍ୟ ।

ରାଜା—ହଁ, ତା ସତ । ଅଚ୍ଛା, ତୁମେ କି ସମ୍ବାଦ ନେଇ ଯାଇଥିଲ ?

କେନେଥ—ମହାରାଜ, ଯେଉଁମାନେ ମୋତେ ପଠାଇଥିଲେ ସେମାନେ ତାହା ଭଲରୂପେ ବୁଝାଇ ପାରିବେ ।

ରାଜା—ସ୍କଟଲଣ୍ଡର ଲୋକଙ୍କଠାରୁ ମୁଁ ସ୍ନେହ ଆଦର ଆଶା କରିବାର କଥା । ମୋର ପୂର୍ବବର୍ତ୍ତୀ ରାଜାମାନେ ସେମାନଙ୍କୁ ଦମନ କରି ନିଜର ପ୍ରଜା ରୂପେ ରଖିବାକୁ ଚେଷ୍ଟା କରୁଥିଲେ; କିନ୍ତୁ ମୁଁ ସେମାନଙ୍କୁ ବନ୍ଧୁତୁଲ୍ୟ ବ୍ୟବହାର ଦେଖାଇ ଆସିଅଛି । ଏହି ହେତୁରୁ ଖ୍ରୀଷ୍ଟ ଆନ ସେନାବାହିନୀର ସର୍ବାଧିନାୟକ ଭାବରେ ମୋର ଜାଣିବାର ଅଧିକାର ଅଛି ଆମର ବନ୍ଧୁ ରାଜାମାନେ କଅଣ କରୁଛନ୍ତି । ଯାହା ଜାଣିଛ ମୋ ଆଗେ ପ୍ରକାଶ କର ।

କେନେଥ—ଯାହା ଜାଣେ ତାହା କହିବାକୁ ମୁଁ ପ୍ରସ୍ତୁତ । ଏନ୍‌ଗାଡିର ସନ୍ନ୍ୟାସୀ ଥିଓଡରିକଙ୍କ ନିକଟକୁ ମୋତେ ପଠାଯାଇ ଥିଲା । ଏହି ସନ୍ନ୍ୟାସୀଙ୍କୁ ସୁଲତାନ ସାଲାଦିନ ମଧ୍ୟ ସମ୍ମାନ ଓ ବିଶ୍ୱାସ କରିଥାନ୍ତି । ମୋ ହାତରେ ସମ୍ବାଦ ଦିଆଯାଇଥିଲା ଯେ ସନ୍ନ୍ୟାସୀ ସୁଲତାନଙ୍କ ନିକଟରେ ସ୍ଥାୟୀ ଶାନ୍ତି ସ୍ଥାପନର ପ୍ରସ୍ତାବ

ଦେବେ ଓ ଏଥିରେ ସୁଲ୍‌ତାନ ରାଜି ହେଲେ ରାଜାମାନେ ପାଲେଷ୍ଟାଇନରୁ ସେମାନଙ୍କ ସୈନ୍ୟ ଉଠାଇ ନେବେ ।

ରିଚାର୍ଡ଼ ପୁଣି କ୍ରୋଧାନ୍ୱିତ ହୋଇ ଉଠିଲେ । ସେ କହିଲେ, "ହିଁ, ଏତେଦୂର ହୀନତା ! ସେମାନେ ଯେ ଏଡ଼େ ନୀଚ କାପୁରୁଷ ହୋଇ ପାରନ୍ତି ମୁଁ ବିଶ୍ୱାସ କରି ପାରୁ ନାହିଁ । ଅଚ୍ଛା, ତୁମେ ସ୍ୱେଚ୍ଛାରେ ଏହି ଘୃଣ୍ୟ ପ୍ରସ୍ତାବ ନେଇ ଯାଇଥିଲ ?"

କେନେଥ କହିଲେ, "ମହାରାଜ, ମୁଁ ବିନା ଆପତ୍ତିରେ ଏହି ସମ୍ବାଦ ନେଇ ଯାଇଥିଲି । ତାର କାରଣ ମଧ୍ୟ ଅଛି । ମୋର ବିଶ୍ୱାସ ଥିଲା, ଆପଣଙ୍କ ନେତୃତ୍ୱରେ ହିଁ ଜେରୁଜେଲମର ପୁନରୁଦ୍ଧାର ସମ୍ଭବପର । ବର୍ତ୍ତମାନ ଆପଣଙ୍କ ରୋଗ ଅବସ୍ଥାରେ ସେ ଆଶା ଦେଖି ନ ପାରି ପରାଜୟ ଆଶଙ୍କାରେ ମୁଁ ସନ୍ଧି ପ୍ରସ୍ତାବ ନେଇ ଯାଇଥିଲି ।"

ରାଜା—ଅଚ୍ଛା, ସନ୍ନ୍ୟାସୀଙ୍କ ବିଷୟରେ ତୁମର ଧାରଣା କଣ ହେଲା ?

କେନେଥ—ବେଳେବେଳେ ତାଙ୍କର ପାଗଳାମି ଦେଖାଯାଏ । ମୋର ବିଶ୍ୱାସ, ମୁସଲମାନମାନଙ୍କ ବିଶ୍ୱାସ ଜନ୍ମାଇବା ପାଇଁ ସେ ଏପରି ଛଳନା କରିଥାନ୍ତି ।

ରାଜା—ଅଚ୍ଛା, ବର୍ତ୍ତମାନ ଆଉ କେତୋଟି ପ୍ରଶ୍ନର ଉତ୍ତର ଦିଅ । ତୁମେ ଏନ୍‌ଗାଜିରେ ଆମ ରାଣୀ ଆଉ ତାଙ୍କ ସହଚରୀ-ମାନଙ୍କୁ ଦେଖିଥିଲ ?

କେନେଥ—ମହାରାଜ, ଏନ୍‌ଗାଜିର ଗୋଟିଏ ଗୁପ୍ତ ଗୀର୍ଜା ଭିତରେ ମୁଁ କେତେଜଣ ମହିଳାଙ୍କୁ ଏକାବେଳେ ଦେଖିଥିଲି । କିନ୍ତୁ ମୁଁ ସେମାନଙ୍କର କାହାରି ମୁଖ ଦେଖି ନାହିଁ କିମ୍ବା କାହାରି ଠାରୁ କିଛି ଶୁଣି ନାହିଁ ।

ରାଜା—ଏହି ମହିଳାମାନଙ୍କ ଭିତରୁ ତୁମେ କାହାରକୁ ଚିହ୍ନି ପାରି ନ ଥିଲ ?

କେନେଥ କ୍ଷଣକାଳ ଚିନ୍ତା କରି କହିଲେ, "ମହାରାଜ, ମୁଁ କାହାରକୁ ଠିକ୍ ଚିହ୍ନି ପାରି ନାହିଁ । କେବଳ ଅନୁମାନ ବଳରେ ମୁଁ ଜଣକୁ ଜାଣିପାରିଛି ବୋଲି ମନେହୁଏ ।"

ରିଚାର୍ଡ଼ଙ୍କର ଭ୍ରୂଲତା କୁଞ୍ଚିତ ହୋଇ ଆସିଲା; ମୁଖ ମଣ୍ଡଳରେ ରକ୍ତିମ ଆଭା ଖେଳିଗଲା । ସେ କ୍ରୁଦ୍ଧ ସ୍ୱରରେ କହିଲେ, "ସାର୍ କେନେଥ, ତୁମେ ଯେପରି ଅନୁମାନ କରି ଜାଣିଲ, ମୁଁ ମଧ୍ୟ ସେହିପରି ଅନୁମାନରେ ଜାଣିପାରୁଛି । ସାବଧାନ ସାର୍ କେନେଥ, ମୋର କ୍ରୋଧର ଉଦ୍ରେକ କଲେ ପରିଣାମ ସାଙ୍ଘାତିକ ହେବ । ମନେରଖିଥାଅ, ତୁମେ ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବା ଉଚିତ ନୁହେଁ ।"

ଏହି ସମୟରେ ବାହାର ତମ୍ବୁରୁ ଗୋଳମାଳ ଶୁଣାଯିବାରୁ ରାଜା ନିଜକୁ ସଂଯତ କରି ନେଇ ସ୍ୱାଭାବିକ ସ୍ୱରରେ କହିଲେ, "ଯଥେଷ୍ଟ ହୋଇଛି । ତୁମେ ଯାଇ ଡାକ୍ତର୍‌ଙ୍କୁ ଜଣାଇ ଦିଅ ଯେ ସେ ମୁସଲମାନ ହକିମ୍‌ଙ୍କୁ ସଙ୍ଗରେ ନେଇ ମୋ ପାଖକୁ ଆସନ୍ତୁ । ଖାଲି ଯଦି ସାଲାଦିନ ଖ୍ରୀଷ୍ଟଧର୍ମ ଗ୍ରହଣ କରନ୍ତେ, ତେବେ ଏହି କାପୁରୁଷ ଦଳଙ୍କୁ ବିତାଡ଼ିତ କରିବାରେ ମୁଁ ତାଙ୍କୁ ସାହାଯ୍ୟ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ ।"

ସାର୍ କେନେଥ ଚାଲିଯିବା ପରେ ପରେ ଟେମ୍ପଲାର-ମାନଙ୍କର ଗ୍ରାଣ୍ଡମାଷ୍ଟର ଓ ମନସେରାଟର ମାର୍କୁଇସ ରାଜାଙ୍କ ତମ୍ବୁରେ ପ୍ରବେଶ କଲେ । ଗ୍ରାଣ୍ଡମାଷ୍ଟରଙ୍କ ଶରୀରର ରଙ୍ଗ ଈଷତ୍ କୃଷ୍ଣ ଓ ତାଙ୍କର ଚେହେରା ଦେଖିଲେ ଘୃଣା ଉପୁଜିବାର କଥା । କିନ୍ତୁ ମାର୍କୁଇସ ଦେଖିବାକୁ ସୁପୁରୁଷ ଓ ତାଙ୍କର ବ୍ୟବହାର

ଅଧିକ ଉଦ୍ଦ୍ରେଶିତ । ଏମାନଙ୍କୁ ଦେଖିଲାମାତ୍ରେ କେହି ବିଶ୍ୱାସର ପାତ୍ର ବୋଲି ମନେ ହେଉ ନ ଥିଲେ । ସେ ଦୁହେଁ ଆସିବାର ଭିନ୍ନ ଉଦ୍ଦେଶ୍ୟ ଥିଲା—ରାଜାଙ୍କୁ ଅନୁରୋଧ କରିବେ, ସେ ଏହି ମୁସଲମାନଠାରୁ କଦାପି ଔଷଧ ଗ୍ରହଣ କରିବେ ନାହିଁ । ବାହାର ତମ୍ବୁରେ ଅପେକ୍ଷା କରି ସେ କିପରି ହକିମ୍‌ଙ୍କୁ ଅଭ୍ୟର୍ଥନା କରିବେ ତାହା ଲକ୍ଷ୍ୟ କରିବା ପାଇଁ ରାଜା ସେ ଦୁହିଁଙ୍କୁ ଜଣାଇ ଦେଲେ ।

ଡିଭକ୍‌ସ ଓ ସାର କେନେଥଙ୍କ ସହିତ ମୁସଲମାନ ହକିମ୍ ରାଜା ରିଚ୍ଚାର୍ଡ଼ଙ୍କ ତମ୍ବୁରେ ପ୍ରବେଶ କଲେ । ଗ୍ରାଣ୍ଡମାଷ୍ଟର ହକିମ୍‌ଙ୍କୁ ଜଣାଇ ଦେଲେ ଯେ ରାଜାଙ୍କ ଉପରେ ଔଷଧ ପ୍ରୟୋଗ କରିବାର ଚେଷ୍ଟା କରିବା ତାଙ୍କ ପକ୍ଷରେ ଅନୁଚିତ ହେବ ।

ତାହା ଶୁଣି ଡିଭକ୍‌ସ କହିଲେ, "ମୁଁ ସଂକ୍ଷେପରେ ଏତିକି କହିପାରେ—ମୁଁ ମୋର ନିଜ ଆଖିରେ ଯାହା ଦେଖିଲି, ତାକୁ ଅବିଶ୍ୱାସ କରିପାରିବି ନାହିଁ । ହକିମ୍‌ଙ୍କର ଆରୋଗ୍ୟ କରିବାର ଶକ୍ତି ଅଛି ଓ ସେ ଆମ ମହାରାଜାଙ୍କୁ ରୋଗ ମୁକ୍ତ କରିପାରିବେ, ଏହା ମୋର ଦୃଢ଼ ବିଶ୍ୱାସ । ଆପଣମାନେ ବିଦାୟ ନେଇ ପାରନ୍ତି ।"

ମନ୍‌ସେରାଟର ମାର୍କୁଇସ ବାହାରିଯିବାକୁ କୁଣ୍ଠା ପ୍ରକାଶ କରି କହିଲେ, "ମହାରାଜାଙ୍କର ଆଦେଶ ଯେ ଚିକିତ୍ସା ସମୟରେ ଆମେମାନେ ଉପସ୍ଥିତ ରହିବୁ ।"

ଡିଭକ୍‌ସ—ବେଶ୍, ସେଥିରେ କାହାର କିଛି ଆପତ୍ତି ନାହିଁ । କିନ୍ତୁ ହକିମ୍‌ଙ୍କର ଚିକିତ୍ସାରେ ଟିକିଏ ମାତ୍ର ବାଧା ସୃଷ୍ଟି କଲେ ମୁଁ ଆପଣମାନଙ୍କୁ ଏ ତମ୍ବୁରୁ ବାହାର କରିଦେବାକୁ ବାଧ୍ୟ ହେବି । ଆସନ୍ତୁ, ହକିମ୍ ମହାଶୟ ।"

ଗ୍ରାଣ୍ଡମାଷ୍ଟର ଗମ୍ଭୀରଭାବରେ ଡାକ୍ତର ସଙ୍ଗେ କିଛି ସମୟ ଯାଏ ଚୁପ୍ ରହିଲେ । ତାପରେ ମନ୍‌ସେରାଟର ମାକୁଇସ୍ ଓ ସେ ଦୁହେଁ ଯାକ ଡାକ୍ତର ସଙ୍ଗ ପଛେ ପଛେ ଚାଲିଲେ । ସାର୍ କେନେଥଙ୍କର ମଧ୍ୟ ଏମାନଙ୍କ ସଙ୍ଗେ ଯିବାର ଇଚ୍ଛା ଥିଲା । କିନ୍ତୁ ସେ ନିଜର ଆସନ କଥା ସ୍ମରଣ କରି ବାହାରେ ରହିଲେ ।

ସେମାନେ ରାଜାଙ୍କ ତମ୍ବୁରେ ପ୍ରବେଶ କରିବାରୁ ରିଚାର୍ଡ଼ କହିଲେ, "ତାହାହେଲେ ଆପଣମାନେ ଆସିଛନ୍ତି ଯେ ଦେଖିବେ ରିଚାର୍ଡ଼ କିପରି ଅନ୍ଧକାରରେ ଲମ୍ଫ ଦେଇପାରେ । ଆପଣମାନେ ଦେଖିପାରିବେ, ହୁଏତ ଅଳ୍ପକାଳ ମଧ୍ୟରେ ଆପଣମାନଙ୍କ ସହିତ ମିଳି ମୁଁ ପୁଣି ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେବି କିମ୍ବା ମୋର ଦେହ କବରରେ ସମାଧିସ୍ଥ ହେବ । ହକିମ୍ ମହାଶୟ, ଆସନ୍ତୁ, ଆପଣଙ୍କ କାର୍ଯ୍ୟ ଆରମ୍ଭ କରନ୍ତୁ ।"

ହକିମ୍ ଏଥିପୂର୍ବରୁ ରାଜାଙ୍କର ରୋଗ ବିଷୟରେ ସବୁ ଜାଣିଥିଲେ । ତେଣୁ ସେ କାଳ ବିଳମ୍ବ ନକରି ଏକ ପାତ୍ର ଜଳ ଆଣି ସେଥିରେ ଗୋଟିଏ ଛୋଟ ଥଳି ବୁଡ଼ାଇ ଦେଲେ । କେନେଥଙ୍କ ଅନୁଚରର ଚିକିତ୍ସାପାଇଁ ସେ ଠିକ୍ ସେହି ଥଳି ବ୍ୟବହାର କରିଥିଲେ ଥଳିଟି ପାତ୍ରରୁ କାଢ଼ିନେଇ ସେ ଉକ୍ତ ଜଳ ରାଜାଙ୍କୁ ପାନ କରିବାପାଇଁ ଦେବାକୁ ଯାଉଛନ୍ତି, ଏହି ସମୟରେ ରାଜା ହଠାତ୍ କହି ଉଠିଲେ, "ହକିମ୍ ମହାଶୟ, ଔଷଧ ଦେବା ପୂର୍ବରୁ ମୋତେ ଆପଣଙ୍କ ହାତଟା ଦିଅନ୍ତୁ ।" ହକିମ୍ ସଙ୍ଗେ ସଙ୍ଗେ ନିଜର ହାତ ବଢ଼ାଇ ଦେଲେ ।

ରାଜା ହକିମ୍‌ଙ୍କର ନାଡ଼ୀରେ କିଛି ସମୟ ଅଙ୍ଗୁଳି ରଖି କହିଲେ, "ମହାଶୟ, ଆପଣମାନେ ନାଡ଼ୀ ଦେଖି ରୋଗ ନିର୍ଣ୍ଣୟ କରି ଔଷଧ ଦିଅନ୍ତି । ମୁଁ ମଧ୍ୟ ନାଡ଼ୀ ଦେଖି ଲୋକ ଚିହ୍ନିପାରେ ।

ଆପଣଙ୍କ ନାଡ଼ିର ଗତି ସ୍ଥିର । ବିଶ୍ୱାସଘାତକର ନାଡ଼ି ଏପରି ହୋଇ ନ ପାରେ । ଭିଉକ୍‌ସ, ଦେଖ, ହକିମ୍‌ଙ୍କର ସାଧୁ ଉଦ୍ଦେଶ୍ୟରେ ମୋର ଲବମାତ୍ର ସନ୍ଦେହ ନାହିଁ । ମୁଁ ଆରୋଗ୍ୟ ହୁଏ ବା ମରେ, ଯାହା ହେଉ ନା କାହିଁକି ହକିମ୍ ମହାଶୟଙ୍କୁ ଉପଯୁକ୍ତ ସମ୍ମାନ ସହକାରେ ନିଜପଦରେ ବିଦାୟ ଦେବ ।”

ଏତିକି କହି ରାଜା ଟିକିଏ ଜଠିପଡ଼ି ଔଷଧଟିକ ପିଇ-ଦେଲେ । ତତ୍ପରେ ଭିଉକ୍‌ସଙ୍କ ବ୍ୟତୀତ ଅନ୍ୟମାନେ ଚାଲିଗଲେ । ଅଳ୍ପ ସମୟ ମଧ୍ୟରେ ରାଜା ପ୍ରଗାଢ଼ ନିଦରେ ଶୋଇପଡ଼ିଲେ ।

## ଆଠ : ଇଗଲ୍ ଓ ସିଂହ

ମାର୍କୁଇସ କନରେଡ୍ ଓ ଗ୍ରାଣ୍ଡମାଷ୍ଟର ଇଂରେଜ ଶିବିର ତ୍ୟାଗ କରି ଚାଲିଗଲେ । ସନ୍ଧ୍ୟାବେଳକୁ ଦୁହେଁଯାକ ଏକାନ୍ତରେ ଗଳ୍ପ କରିବାକୁ ଲାଗିଲେ ।

ମାର୍କୁଇସ୍—ତୁମ ନିଜ ପକ୍ଷରେ ଓ ଟେମ୍ପଲାରମାନଙ୍କ ପକ୍ଷରେ ଏହି ଧର୍ମଯୁଦ୍ଧର ଫଳ କଅଣ ହେବ ବୋଲି ମନେ କରୁଛ ?

ଗ୍ରାଣ୍ଡମାଷ୍ଟର—ଏହାର ପରିଣାମରେ ଆମ ସମସ୍ତଙ୍କର ଅନିଷ୍ଟ ଛଡ଼ା କିଛି ଇଷ୍ଟ ଦେଖାଯାଉନାହିଁ ।

ମାର୍କୁଇସ୍—ତା ସତ । ସୁଲତାନଙ୍କୁ ଅମେ ଯେତେ ନଇଁସଣି କଲେଣି, ସେଥିରେ ଯେ ସେ କେବେ ହେଲେ ଖ୍ରୀଷ୍ଟିଆନ ଟେମ୍ପଲାର-ମାନଙ୍କୁ ଏଠାରେ ସ୍ଥାନ ଦେବେ, ଏପରି ଆଶା ହେଉନାହିଁ ।

ଗ୍ରାଣ୍ଡମାଷ୍ଟର—ହୁଏତ ଏ ଧର୍ମଯୁଦ୍ଧରେ ଅମେ ଜେରୁଜେଲମ ପୁନଶ୍ଚ ଅଧିକାର କରିପାରିବା । ତାହା ହେଲେ ତୁମେ ଜେରୁ-ଜେଲମର ରାଜା ହୋଇପାରିବ ।

ମାର୍କୁଇସ୍—ଏ କଥାର କିଛି ମୂଲ୍ୟ ନାହିଁ । ରାଜା ହୋଇ ଯଦି ତାକୁ ପ୍ରଜାମାନଙ୍କ କଥାରେ ବା ତାର ବନ୍ଧୁମାନଙ୍କ କଥାରେ ଚଳିବାକୁ ହୁଏ ତେବେ ସେ କି ରାଜା ! ଆଉ ଗୋଟିଏ କଥା ମନେ ରଖିବା ଦରକାର । ଯେବେ ରିଚାର୍ଡ଼ ଏ ରୋଗରୁ ଭଲ ହୁଅନ୍ତି, ତେବେ ସେ କଅଣ ମୋତେ ଜେରୁଜେଲମର ରାଜା କରିବେ ?

ଗ୍ରାଣ୍ଡମାଷ୍ଟର—ବୋଧହୁଏ ମାର୍କୁଇସ କନରେଡ଼ଙ୍କ ଘୃଣ୍ଟ ଦେଲେ ଅନ୍ୟ କେହି ସାହସ କରି ଛିଡ଼ାପାରିବ ନାହିଁ ଯେ ଏ ଧର୍ମଯୁଦ୍ଧ ବିଫଳ ହେବ ।

ମାର୍କୁଇସ—ତୁମେ ଏ କଥା ଅନ୍ୟ କାହାରି ପାଖେ ପ୍ରକାଶ କରିବ ନାହିଁ । ଆମ ଦୁହିଁଙ୍କର ସ୍ୱାର୍ଥ ଏକ; ତେଣୁ ଅମେ ପରସ୍ପରର ବନ୍ଧୁ । ଯଦି ଧର୍ମଯୁଦ୍ଧରେ ଆମର ବିଜୟ ହୁଏ ଓ ଆମେ ଜେରୁଜେଲମ ଫେରି ପାଉ, ତାହା ହେଲେ ଏଠାରେ ଜଣେ କାହାକୁ ରାଜା ରୂପେ ନିର୍ବାଚନ କରାଯିବ । ସେତେବେଳେ କଅଣ ଟେମ୍ପଲରମାନଙ୍କର ଆଉ ସ୍ୱାଧୀନତା ରହିବ ? ତୁମର ଧନ ମାନ କିଛି ରହିବ ନାହିଁ ।

ଗ୍ରାଣ୍ଡମାଷ୍ଟର—ହଁ, ତା ହେବା ଖୁବ୍ ସମ୍ଭବ । କିନ୍ତୁ ମିଳିତ ରାଜାମାନେ ପାଲେଷ୍ଟାଇନ ଛାଡ଼ି ଚାଲିଗଲେ ଆମର କି ଲାଭ ହେବ ?

ମାର୍କୁଇସ—ସାଲାଦିନ ତାଙ୍କ ସୈନ୍ୟ ବିଭାଗରେ କେତେ ଦଳ ଇଉରୋପୀୟ ସୈନ୍ୟ ରଖିବାକୁ ଚେଷ୍ଟିତ । ତାଙ୍କର ବର୍ତ୍ତମାନ ସୈନ୍ୟ ଦଳ ସହିତ ଏମାନେ ରହିଲେ ସେ ଇଜିପ୍ଟ, ପାରସ୍ୟ ପ୍ରଭୃତିରେ ବିଜୟୀ ହୋଇପାରିବେ । ଅମେ ତାଙ୍କ ସୈନ୍ୟ ବିଭାଗରେ ରହିପାରିବା । ଆଉ ଗୋଟିଏ କଥା । ଏଠାରେ କେତେ ରାଜ୍ୟ ଆଜି ଉନ୍ନତିର ସୀମାକୁ ଉଠୁଛି ତ କାଲି ଧ୍ୱଂସ ପାଇଯାଉଛି । ଏ ପରିସ୍ଥିତିରେ ସାଲାଦିନଙ୍କ ମୃତ୍ୟୁ ଘଟିଲେ ଆମର ଭାଗ୍ୟ ବଦଳି ଯାଇପାରେ ।

ଗ୍ରାଣ୍ଡମାଷ୍ଟର—ତୁମ କଥା ଖୁବ୍ ସତ; କିନ୍ତୁ ଆମକୁ ଖୁବ୍ ସତର୍କ ରହିବାକୁ ହେବ । ଫ୍ରାନ୍ସର ରାଜା ଫିଲିପ ଭାରି ଚାଲାକ; ସାହସୀ ମଧ୍ୟ । ଇଂଲଣ୍ଡର ରାଜା ରିଚାର୍ଡ଼ଙ୍କୁ ସେ ମନେ ମନେ ହିଂସା କରନ୍ତି । ପାରିସକୁ ଫେରିଯିବା ତାଙ୍କର ଇଚ୍ଛା । ଅଷ୍ଟ୍ରିଅର ଡ୍ୟୁକ

ଲର୍ଡପୋଲ୍ଡ ମଧ୍ୟ ଇଗୁର୍ଡଙ୍କୁ ଘୃଣା କରନ୍ତି । ସମସ୍ତେ ଚାହାନ୍ତି, ସାଲାଦିନଙ୍କ ସଙ୍ଗେ ସନ୍ଧି କରି ନିଜ ନିଜ ରାଜ୍ୟକୁ ଫେରି ଯିବାକୁ । କେବଳ ଇଗୁର୍ଡଙ୍କର ମତ ହେଲା, ସାଲାଦିନଙ୍କ ସହିତ ସନ୍ଧି ଅସମ୍ଭବ । ଅଚ୍ଛା, ତୁମେ ପ୍ରସ୍ତାବ କଲ ଯେ ସନ୍ଧି ପ୍ରସ୍ତାବ ଦେଇ ସାର୍ କେନେଥକୁ ପଠାଯାଉ—ତୁମର ପ୍ରକୃତ ଅଭିପ୍ରାୟ କଅଣ ?

ମାର୍କୁଇସ୍—କେନେଥ ହେଉଛି ଇଗୁର୍ଡଙ୍କ ଦେଶର ଲୋକ । ତେଣୁ ସାଲାଦିନ ତା କଥା ଶୁଣିବେ । କିନ୍ତୁ ମୁଁ ଜାଣେ, ରାଜା ତାକୁ ଭଲ ପାଆନ୍ତି ନାହିଁ । ତେଣୁ ସେ ଇଗୁର୍ଡଙ୍କ କଥା କହିବାକୁ ସାହସ କରିବ ନାହିଁ । ସହଜରେ ଆମର ଉଦ୍ଦେଶ୍ୟ ସଫଳ ହୋଇଯିବ ।

ଗ୍ରାଣ୍ଡମାଷ୍ଟର—ତୁମର କୌଶଳ ବାସ୍ତବରେ ଚମତ୍କାର । ଏବେ ଦେଖୁଛ, ସେ ଗୋଟାଏ ହକିମ୍‌କୁ ଆଣି ରାଜାଙ୍କୁ ଆରୋଗ୍ୟ କରାଇବାକୁ ବସିଲାଣି । ମାତ୍ର ଇଗୁର୍ଡ ଯେବେ ଆଉ ରୋଗ ଶଯ୍ୟାରୁ ନଉଠନ୍ତେ, ତେବେ ସବୁ ଅଡୁଆ ତୁଟିଯାଆନ୍ତା । ମୋ କଥା ବୁଝିପାରୁଥିବ ?

ଗ୍ରାଣ୍ଡମାଷ୍ଟରଙ୍କ ଇଙ୍ଗିତଟା କନରେଡ୍ ବେଶ୍ ବୁଝିପାରିଥିଲେ । କିନ୍ତୁ ଧର୍ମଯୁଦ୍ଧର ସର୍ବାଧିନାୟକ ଇଗୁର୍ଡଙ୍କୁ ହତ୍ୟା କରିବା କଥା ଚିନ୍ତା କରିବା ମାତ୍ରକେ ତାଙ୍କର ମୁଖ ପାଣ୍ଡୁର ଓ ବିବର୍ଣ୍ଣ ହୋଇଗଲା । ପ୍ରଥମେ ଇଂଲଣ୍ଡ ଓ ମିତ୍ର ଗୋଷ୍ଠୀର ରାଜ୍ୟମାନଙ୍କ ମଧ୍ୟରେ ବିରୋଧ ସୃଷ୍ଟି କରିବା ପାଇଁ କନରେଡ୍ ଗ୍ରାଣ୍ଡମାଷ୍ଟରଙ୍କୁ ପରାମର୍ଶ ଦେଇ କହିଲେ ଯେ ଏହା ଫଳରେ ଧର୍ମଯୁଦ୍ଧ ଆପେ ଆପେ ଲୋପ ପାଇଯିବ । ଗ୍ରାଣ୍ଡମାଷ୍ଟର ଏହି ପ୍ରସ୍ତାବଟିକୁ ଗ୍ରହଣ କରିନେଲେ । ଏଥିମଧ୍ୟରେ ଇଗୁର୍ଡଙ୍କୁ ହତ୍ୟା କରିବା ପ୍ରସ୍ତାବଟି କନରେଡ୍‌ଙ୍କ ମନକୁ ଅଧିକାର କରି ସାରିଥିଲା । ଉଭୟେ

ପରସ୍ପରଠାରୁ ବିଦାୟ ନେଲେ । ଯାଉ ଯାଉ ବାଟରେ ସେଣ୍ଟ ଜର୍ଜ ପାହାଡ଼ ଉପରେ ଉଡ଼ୁଥିବା ଇଂଲଣ୍ଡର ପତାକାଟି ଦେଖିଲାକ୍ଷଣି କନରେଡ଼ଙ୍କ ମନରେ ଏକ ଦୁଷ୍ଟ ବୁଦ୍ଧି ପ୍ରବେଶ କଲା । ବିଭିନ୍ନ ରାଜାଙ୍କ ମଧ୍ୟରେ ବିବାଦର ସୂତ୍ରପାତ କରିବାକୁ ସେ ମନସ୍ଥ କଲେ ।

ଅଷ୍ଟ୍ରିଆର ଡିଉକ୍ ଲିଓପୋଲ୍ଡ଼ ଦେଖିବାକୁ ଉନ୍ନତ ଶରୀର, ବଳିଷ୍ଠ ଓ ସୁପୁରୁଷ ଥିଲେ; କିନ୍ତୁ ତାଙ୍କଠାରେ ରାଜୋଚିତ ଗୁଣର ଅଭାବ ଥିଲା । କେଉଁ ପରିସ୍ଥିତିରେ କିପରି କାର୍ଯ୍ୟ କରିବାକୁ ହେବ ତାହା ସେ ଚିନ୍ତା କରୁନଥିଲେ । ତାଙ୍କର ବ୍ୟବହାର ରୁକ୍ଷ ଥିଲା । ଅପରିଣାମଦର୍ଶିତା ଥିଲା ତାଙ୍କର ପ୍ରଧାନ ଦୋଷ । ଧର୍ମଯୁଦ୍ଧରେ ଯୋଗ ଦେଲା ବେଳେ ସେ ମନେକରିଥିଲେ ଯେ ଏହାଦ୍ୱାରା ସେ ଇଂଲଣ୍ଡର ରାଜାଙ୍କ ବନ୍ଧୁତା ଅର୍ଜିପାରିବେ । କିନ୍ତୁ ଲିଓପୋଲ୍‌ଡ଼ଙ୍କର ଘୋର ଆଳସ୍ୟ, ବିଳାସପ୍ରିୟତା, ମଦ୍ୟପାନରେ ଅସକ୍ତ ଓ ବିଚାରହୀନତା ଦେଖି ରିଚାର୍ଡ଼ ତାଙ୍କ ପ୍ରତି ବିରକ୍ତ ଥିଲେ ।

ଲିଓପୋଲ୍‌ଡ଼ ରିଚାର୍ଡ଼ଙ୍କର ବନ୍ଧୁତା ଲାଭ କରି ନପାରି ତାଙ୍କୁ ଘୃଣା କରିବାକୁ ଲାଗିଲେ । ଏଣେ ଫ୍ରାନ୍‌ସର ରାଜା ଫିଲିପ ମଧ୍ୟ ରିଚାର୍ଡ଼ଙ୍କର ଦାମ୍ଭିକତା ଓ ଗର୍ବ ଦେଖି ମନେ ମନେ ତାଙ୍କୁ ଈର୍ଷା କରୁଥିଲେ ଓ ସୁଯୋଗ ପାଇଲେ ଲିଓପୋଲ୍‌ଡ଼ଙ୍କୁ ଉତ୍ତେଜିତ କରୁଥିଲେ ।

ଦିନେ ମାର୍କୁଇସ କନରେଡ଼ ଅଷ୍ଟ୍ରିଆର ଡିଉକଙ୍କୁ ତାଙ୍କ ଶିବିରରେ ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ଅନେକ ନାଇଟ ଓ ସେମାନଙ୍କ ଅନୁଚରମାନେ ମଧ୍ୟ ଏହି ଭୋଜନ ଉତ୍ସବରେ ଯୋଗ ଦେଇଥିଲେ । ଭୋଜନ ଓ ମଦ୍ୟପାନ ସଙ୍ଗେ ଗଳ୍ପ ଆମୋଦ ଚାଲିଥିଲା ।

ମାର୍କୁଇସ ଓ ଅଷ୍ଟ୍ରିଆର ଉଭୟେ ପରସ୍ପରର ନିକଟରେ ବସିଥିଲେ । କଥା ପ୍ରସଙ୍ଗରେ ଅଷ୍ଟ୍ରିଆର ଜାତୀୟ ପତାକା ବିଷୟରେ ଆଲୋଚନା ପଡ଼ିଲା । ଜଣେ କେହି ମନ୍ତବ୍ୟ ପ୍ରକାଶ କଲେ—ଅଷ୍ଟ୍ରିଆର ପତାକାରେ ଇଗଲର ଚିହ୍ନ । ଇଗଲ ଯେତେ ଉଚ୍ଚକୁ ଉଡ଼ିପାରେ ଅନ୍ୟ କୌଣସି ଜୀବ ସେତେ ଉଚ୍ଚକୁ ଯାଇ ପାରେ ନାହିଁ ।

କନରେଡ଼ କହିଲେ, "ନାଁ, ଏବେ ଆଉ ସେ କାଳ ନାହିଁ । ସିଂହ କୁଦା ମାରି ଇଗଲ୍ ଉପରକୁ ଗଲାଣି । ଦେଖ, ଏ ଶିବିରରେ ଏତେ ପତାକା ଅଛି କିନ୍ତୁ ସମସ୍ତଙ୍କଠାରୁ ଉଚ୍ଚରେ ବହୁଛି ଇଂଲଣ୍ଡର ପତାକା; ସେଥିରେ ଅଛି ସିଂହର ଛବି । ଗୋଟିଏ ସିଂହର ନୁହେଁ—ତିନୋଟି ସିଂହର ।"

ଉଭୟ ବିରକ୍ତି ପ୍ରକାଶ କରି କହିଲେ, "ତୁମେ ତ ବେଶ୍ ଧୀରସ୍ଥିର ଭାବରେ ଏକଥା କହିପାରୁଛ । ଏ ଅପମାନକୁ ତୁମେ ସହୁଛ କିପରି ?"

କନରେଡ଼ ପୂର୍ବପରି ନମ୍ର ସ୍ୱରରେ କହିଲେ, "ଆପଣଙ୍କ ଭଳି ବଡ଼ ବଡ଼ ରାଜାମାନେ ଏହାକୁ ବରଦାସ୍ତ କରୁଛନ୍ତି । ସେତେବେଳେ ଆମର ଏଥିରେ କହିବାର କଅଣ ଥାଇପାରେ ?"

ଡିଉକ୍ ଲିଓପୋଲଡ଼ ବିରକ୍ତି ସହକାରେ ଟେବୁଲ୍ ଉପରେ ହାତ ବାଡ଼େଇ କହିଲେ, "ମୁଁ ସେ ବିଷୟ ଫ୍ରାନ୍ସର ରାଜା ଫିଲିପଙ୍କୁ କହିଥିଲି । କିନ୍ତୁ ସେ କଅଣ କହିଲେ ଜାଣ ? ସେ କହିଲେ ଯେ ଏଭଳି ସାମାନ୍ୟ ବିଷୟରେ ଆପଣା ଆପଣା ଭିତରେ କଳି କରିବା ଉଚିତ ନୁହେଁ ।"

ଏହିପରି କୌଶଳରେ ମାର୍କୁଇସ କନରେଡ଼ ଅଷ୍ଟ୍ରିଆର ଡିଉକ୍‌ଙ୍କୁ ଉତ୍ତେଜିତ କରିବାରୁ ସେ କ୍ରୋଧାନ୍ଧ ହୋଇ ଉଠିପଡ଼ିଲେ

ଓ ପ୍ରତିଜ୍ଞା କଲେ, "ମୁଁ ନିଶ୍ଚୟ ଇଂରେଜ ପତାକାକୁ ଚିରି ଫିଙ୍ଗି ଦେବି ଓ ତା ସ୍ଥାନରେ ଅଷ୍ଟ୍ରିଆର ପତାକା ଉଡ଼ାଇବି ।" ତାଙ୍କର ସହଚର ନାଇଟମାନେ ତାଙ୍କ ପଛେ ପଛେ ଚାଲିଲେ । ସେମାନେ ଇଂଲଣ୍ଡର ପତାକାକୁ ଉପାଡ଼ି ଫିଙ୍ଗି ଦେଇଥାନ୍ତେ, କିନ୍ତୁ ସେମାନଙ୍କ ଭିତରୁ ଜଣେ ପରାମର୍ଶ ଦେଲେ—ଏପରି କରିବାଦ୍ୱାରା ଇଂଲଣ୍ଡ ଓ ଅଷ୍ଟ୍ରିଆର ସୈନ୍ୟମାନଙ୍କ ଭିତରେ ଯୁଦ୍ଧ ଲାଗିଯାଇପାରେ । ବରଂ ଇଂଲଣ୍ଡର ପତାକା ପାଖେ ଅଷ୍ଟ୍ରିଆର ପତାକାକୁ ଉଡାଯାଉ । ଶେଷରେ ତାହାହିଁ କରାଗଲା ।

ଏଥିମଧ୍ୟରେ କନରେଡ଼ ସେ ସ୍ଥାନ ତ୍ୟାଗ କରି ଚାଲିଗଲେ । ଅଷ୍ଟ୍ରିଆର ଡିଉକ୍ ତାଙ୍କୁ ଖୋଜି ଆଉ ପାଇଲେ ନାହିଁ । ତାଙ୍କର ମନ ଉତ୍ତେଜନାରେ ପୂର୍ଣ୍ଣ । ସେ କେତେ ଗ୍ଲାସ ମଦ୍ୟ ଅଣାଇ ସେଣ୍ଟ ଜର୍ଜ ପାହାଡ଼ ଉପରେ ବସି ପିଇଲେ। ତାଙ୍କ ଅନୁଚରମାନେ ମଧ୍ୟ ସେହିଠାରେ ପାନ ଭୋଜନରେ ମାତିଗଲେ ।

ଏଣେ ରିଚାର୍ଡ଼ଙ୍କର ଉଠିବା ସମୟ ହେଲା । ନିଦ୍ରା ଭଙ୍ଗ ପରେ ସେ ଅନୁଭବ କଲେ ଯେ ତାଙ୍କର ରୋଗ ଆଦୌ ନାହିଁ । ସେ ସଙ୍ଗେ ସଙ୍ଗେ ଡିଭ୍‌କ୍‌ସଙ୍କୁ ଆଦେଶ ଦେଲେ, "ଯାଅ, ଆମ ରାଜକୋଷରେ ଯାହା କିଛି ଧନସମ୍ପତ୍ତି ଅଛି ସବୁ ହକିମ୍‌ଙ୍କୁ ପୁରସ୍କାର ସ୍ୱରୂପ ଦିଅ ।" କିନ୍ତୁ ହକିମ୍ କହିଲେ, "ମହାରାଜ, ଆପଣ ରୋଗମୁକ୍ତ ହୋଇଅଛନ୍ତି ସତ୍ୟ, କିନ୍ତୁ ଆପଣଙ୍କୁ ଆଉ କିଛି ସମୟ ବିଶ୍ରାମ ନେବାକୁ ହେବ । ଆପଣ ମୋତେ ପୁରସ୍କାର ଦେବାକୁ ଚାହାନ୍ତି । କିନ୍ତୁ ଅଲ୍ଲାଙ୍କର ଆଦେଶ, ମୁଁ ଏଥିପାଇଁ କିଛି ମାତ୍ର ଗ୍ରହଣ କରିପାରିବି ନାହିଁ ।"

ଠିକ୍ ଏହି ସମୟରେ ରାଜା ରିଚାର୍ଡ଼ ଲଙ୍ଗଫୋଲଡ଼ଙ୍କ ଅନୁଚର-ମାନଙ୍କ ଆନନ୍ଦଧ୍ୱନି ଶୁଣିପାରିଲେ । ସେ ଏହି କୋଳାହଳର କାରଣ

ଜାଣିବାକୁ ବ୍ୟଗ୍ର । ଏତିକିବେଳେ ମାକ୍ରୁ ଇସ କନରେଡ଼ ଆସି ପତାକା ବୃତ୍ତାନ୍ତ ବର୍ଣ୍ଣନା କରି କହିଲେ, "ଅଷ୍ଟ୍ରିଆର ଡିଉକ୍ ଙ୍କର ଏ ଗୋଟାଏ ପାଗଳାମି । ତା ନ ହେଲେ କି ସେ ସେଣ୍ଟ ଜର୍ଜ ପାହାଡ଼ ଉପରେ ଇଂଲଣ୍ଡର ପତାକା ପାଖରେ ଅଷ୍ଟ୍ରିଆର ଗୋଟାଏ ପତାକା ପୋତିଥାନ୍ତେ ?"

ରିଚାର୍ଡ଼ କ୍ରୁଦ୍ଧ ସିଂହ ପରି ଗର୍ଜ୍ଜିଉଠିଲେ—"କଅଣ । କଅଣ ।" କନରେଡ଼ ଆଉ କିଛି କହିବା ପୂର୍ବରୁ ରିଚାର୍ଡ଼ ବିଛଣାରୁ ଉଠିପଡ଼ିଲେ ଓ ନିଜର ଖଣ୍ଡାଟି ଧରି ସେଣ୍ଟ ଜର୍ଜ ପାହାଡ଼ ଆଡ଼କୁ ଅଗ୍ରସର ହେଲେ । ଡିଭକ୍ସ ସୈନ୍ୟମାନଙ୍କୁ ସେଣ୍ଟ ଜର୍ଜ ନିକଟକୁ ଯିବାକୁ ଆଦେଶ ଦେଇ ରାଜାଙ୍କ ସଙ୍ଗେ ଚାଲିଲେ ।

କେହି ଗୋଳମାଳର ପ୍ରକୃତ କାରଣ ବୁଝି ନଥିଲେ; କିନ୍ତୁ ଅଳ୍ପ ସମୟ ମଧ୍ୟରେ ଶିବିରର ସମସ୍ତେ ଅସ୍ତ୍ରଶସ୍ତ୍ର ଧରି ଚିତ୍କାର କଲେ, "ସେଣ୍ଟ ଜର୍ଜ, ସେଣ୍ଟ ଜର୍ଜ ।"

ରାଜା ରିଚାର୍ଡ଼ ଓ ଡିଭକ୍ସ କେନେଥଙ୍କ ଶିବିର ପାଖ ଦେଇ ଯାଉଥିବାର ଦେଖି କେନେଥ ମଧ୍ୟ ନିଜର ଖଣ୍ଡା ଓ ଢାଲ୍ ଧରି ତାଙ୍କ ପଛେ ପଛେ ଚାଲିଲେ ।

ଅଷ୍ଟ୍ରିଆର ସୈନ୍ୟମାନେ ସେଣ୍ଟ ଜର୍ଜ ପାହାଡ଼ ଉପରେ ଅଷ୍ଟ୍ରିୟାର ପତାକା ଚାରିପାଖେ ଆନନ୍ଦ ଉତ୍ସବରେ ମାତିଥିଲେ । ମଝିରେ ଥିଲେ ଡିଉକ୍ ଲିଓପୋଲ୍ଡ଼ । ରିଚାର୍ଡ ଦୁଇଜଣ ମାତ୍ର ଅନୁଚର ସହ ମେଷ ପଲରେ ବ୍ୟାଘ୍ରସଦୃଶ ସେମାନଙ୍କ ମଧ୍ୟରେ ପ୍ରବେଶ କରି ଗର୍ଜନ କଲେ, "ମୋର ପତାକା ପାଖରେ ଏ ଖଣ୍ଡିଆ କନା ଉଡ଼ାଇବାକୁ କିଏ ସାହସ କଲା ? ତାର କଣ ଜୀବନକୁ ଟିକିଏ ସୁଦ୍ଧା ଭୟ ନାହିଁ ।"

ସମସ୍ତେ ନୀରବ, ନିରୁତ୍ତର । ରିଚାର୍ଡ଼ ପୁଣି ଗୁରୁଗମ୍ଭୀର ସ୍ୱରରେ ପଚାରିଲେ, "ମୁଁ ଜାଣିବାକୁ ଚାହେଁ, କେଉଁ ଅଧମ ଏ ଦୁଃସାହସ କରିଛି ?" ଏହା ପରେ ଡକ୍‌ଭିକଙ୍କଠାରୁ ଉତ୍ତର ମିଳିଲା—ମୁଁ ସେ ପତାକା ପୋତିଛି ।

ରିଚାର୍ଡ଼ ଅଷ୍ଟ୍ରିଆର ପତାକାକୁ ଟାଣି ଆଣି ତଳେ ପକାଇ ଦେଲେ । ତା ଉପରେ କେତେବାର ପଦାଘାତ କରି କହିଲେ, "ଯଦି ମୋ ସଙ୍ଗେ କାହାର ପ୍ରତିବାଦ କରିବାର ସାହସ ଥାଏ, ସେ ଆସୁ ।"

ଅଷ୍ଟ୍ରିଆର ସୈନିକମାନଙ୍କ ମଧ୍ୟରୁ ଅନେକେ ବାହାରି ପଡ଼ିଲେ । ସେମାନଙ୍କ ମଧ୍ୟରୁ ଜଣେ ଚିତ୍କାର କଲା—ଆଉ ବିଳମ୍ବ କରିବା ଦରକାର ନାହିଁ । ଏହା କହିବା ସଙ୍ଗେ ସଙ୍ଗେ ସେ ଖଣ୍ଡା ବାହାର କରି ରିଚାର୍ଡ଼ଙ୍କ ମସ୍ତକକୁ ଆଘାତ କରିବାକୁ ଗଲା; କିନ୍ତୁ ଖଣ୍ଡା ମସ୍ତକ ସ୍ପର୍ଶ କରିବା ପୂର୍ବରୁ କେନେଥଙ୍କ ଢାଲ୍ ରାଜାଙ୍କ ମସ୍ତକକୁ ଆବରଣ କରି ସାରିଥିଲା । ତେଣୁ ଖଣ୍ଡାର ପ୍ରହାର ଢାଲ୍ ଉପରେ ପଡ଼ିଲା; ରିଚାର୍ଡ଼ଙ୍କ ଜୀବନ ରକ୍ଷା ହେଲା ।

ରିଚାର୍ଡ଼ ସିଂହ ଗର୍ଜନରେ କହିଲେ, "ଧର୍ମଯୁଦ୍ଧର କୌଣସି ସୈନିକକୁ ଆଘାତ କରିବି ନାହିଁ—ଏହାହିଁ ମୋର ପ୍ରତିଜ୍ଞା । ତେଣୁ ଏ ସୈନିକର ପ୍ରାଣ ନେବି ନାହିଁ । ସେ ବଞ୍ଚିଥାଉ, କିନ୍ତୁ ତାକୁ ଏପରି ଶିକ୍ଷା ଦେବି ଯେ ସେ ଚିରଦିନ ରିଚାର୍ଡ଼ଙ୍କୁ ମନେ ପକାଉଥିବ ।" ଏହା କହି ସେ ସେହି ଅଷ୍ଟ୍ରିଆନ ସୈନ୍ୟକୁ ଅଣ୍ଟାରୁ ଧରି ମୁଣ୍ଡ ଉପରକୁ ଟେକି ନେଲେ ଓ ଥରେ ଦୁଇଥର ଘୂରାଇ ଏପରି ଫିଙ୍ଗିଦେଲେ ଯେ ସେ ବହୁ ଦୂରରେ ପଡ଼ିଲା ।

ରୋଗଶଯ୍ୟାରୁ ସଦ୍ୟ ଉଠିଥିବା ରିଚାର୍ଡ଼ଙ୍କର ଏହି ଅମାନୁଷିକ ଓ କଳ୍ପନାତୀତ ଶକ୍ତିର ପରିଚୟ ପାଇ ଅଷ୍ଟ୍ରିୟାନ ଯୋଦ୍ଧାମାନେ

ଚକିତ ହୋଇଗଲେ । ରିଚାର୍ଡ଼ଙ୍କର ସମ୍ମୁଖୀନ ହେବାପାଇଁ କାହାରି ସାହସ ହେଲନାହିଁ । ସମସ୍ତେ ଏକତ୍ର ମିଳିତ ହୋଇ ଆକ୍ରମଣ କରିବାକୁ ମଧ୍ୟ ସାହସ କରିପାରିଲେ ନାହିଁ ; କାରଣ ରିଚାର୍ଡ଼ଙ୍କ ସଙ୍ଗରେ ଯେଉଁ ଦୁଇଜଣ ମାତ୍ର ସହଚର ଥିଲେ—ଥମାସ୍ ଓ କେନେଥ—ସେ ଦୁହିଁଙ୍କର ବୀରତ୍ୱ କାହାରିକୁ ଅବିଦିତ ନଥିଲା ।

ଏହି ସଙ୍କଟମୟ ମୁହୂର୍ତ୍ତରେ ସେ ସ୍ଥାନରେ ଉପସ୍ଥିତ ହେଲେ ଫ୍ରାନ୍ସର ରାଜା ଫିଲିପ । ସେ ଥିଲେ ସମସ୍ତଙ୍କଠାରୁ ବିଜ୍ଞ ଓ ଶାନ୍ତ ପ୍ରକୃତିର । ତେଣୁ ସମସ୍ତେ ତାଙ୍କୁ ସମ୍ମାନ ଦେଖାଉଥିଲେ । ତାଙ୍କୁ ଦେଖିଲା ମାତ୍ରେ ଲିଓପୋଲ୍ଡ଼ ଲଜ୍ଜିତ ହୋଇପଡ଼ିଲେ । ରିଚାର୍ଡ଼ଙ୍କୁ ମଧ୍ୟ ସଙ୍କୋଚ ଆସିଲା । ସର୍ବାଧିନାୟକ ପଦରେ ଅଧିଷ୍ଠିତ ହୋଇ ସେ ଏହି ଘଟନାରେ ଅସହିଷ୍ଣୁତା ପ୍ରଦର୍ଶନ କରିଥିବାରୁ ସଙ୍କୋଚ ଅନୁଭବ କଲେ । ଫିଲିପ ଉଭୟ ପକ୍ଷର କଥା ଶୁଣି ରିଚାର୍ଡ଼ ଓ ଲିଓପୋଲ୍ଡ଼ ଦୁହିଁଙ୍କୁ ଶାନ୍ତ ହେବାକୁ ବୁଝାଇଲେ । ଉଭୟେ ବିବାଦ ଭୁଲିଯିବାପାଇଁ ସେ ବାରମ୍ବାର ଅନୁରୋଧ କଲେ ଓ କହିଲେ ଯେ ରାଜନ୍ୟମଣ୍ଡଳୀର ପରିଷଦରେ ଏ ବିଷୟର ବିଚାର ହେବ ।

ସେଣ୍ଟ ଜର୍ଜ ପାହାଡ଼ ଉପରେ ପୁଣି ଏକମାତ୍ର ଇଂଲଣ୍ଡର ପତାକା ରହିଲା । ସୈନ୍ୟମାନେ ସେଠାରୁ ଚାଲିଗଲେ ।

ଏତିକରେ ରିଚାର୍ଡ଼ଙ୍କ ମନରେ ଶାନ୍ତି ଆସିଲା ନାହିଁ । ତାଙ୍କର ଗୋଟାଏ ଆଶଙ୍କା ଜାତ ହେଲା—ଦିନବେଳେ କେହି ଆଉ ଇଂଲଣ୍ଡର ପତାକାକୁ ସ୍ପର୍ଶ କରିବାକୁ ସାହସ କରିବେ ନାହିଁ ସତ; କିନ୍ତୁ ରାତିରେ ଯେ କେହି ପତାକାର ଅପମାନ କରିପାରେ । ଇଂଲଣ୍ଡର ପତାକାର ଅପମାନ ଯାହା, ରାଜା ରିଚାର୍ଡ଼ଙ୍କର ଅପମାନ

ଥାହା । ତେଣୁ ଗ୍ରାମରେ ପତାକାକୁ କେହି ଜଗିରହିବା ଦରକାର ।
ସେ କେନେଥଙ୍କୁ ଡାକି କହିଲେ "ସାହସୀ ବୀର କେନେଥ, ଏ
ଘଟନା ପରେ ଆମର ଜାତୀୟପତାକାକୁ ଗ୍ରାମରେ ଅରକ୍ଷିତ
ଅବସ୍ଥାରେ ଛାଡ଼ିଦେବାକୁ ମୋର ସାହସ ହେଉନାହିଁ । ତୁମେ
ଏଠାରେ ସାରା ରାତି ଜଗି ରହି ଆମର ପତାକାକୁ ରକ୍ଷା କରିବ ।
ବହୁ ଶତ୍ରୁ ଏକତ୍ର ଆକ୍ରମଣ କରିବାକୁ ଆସିଲେ ଭେରୀ ଧ୍ୱନିଦ୍ୱାରା
ଆମମାନଙ୍କୁ ସମ୍ବାଦ ଦେବ ।"

କେନେଥ ନିଜ ଜୀବନକୁ ବିପନ୍ନ କରି ରବର୍ଟଙ୍କ ଜୀବନ ରକ୍ଷା
କରିଥିବାରୁ ରାଜା ତାଙ୍କ ଉପରେ ଏହି ଗୁରୁ ଦାୟିତ୍ୱ ନ୍ୟସ୍ତ କଲେ ।
ରାଜା ତାଙ୍କୁ ଏହି ଭାର ଦେଇଥିବାରୁ ସେ ନିଜକୁ ସମ୍ମାନିତ
ମନେକଲେ ଓ ରାଜାଦେଶ ପ୍ରାଣପଣେ ପାଳନ କରିବାକୁ ପ୍ରସ୍ତୁତ
ହେଲେ ।

## ନଅ : ପତାକା ଚୋର

ସାର୍ କେନେଥ ଅଳ୍ପ ସମୟ ପାଇଁ ନିଜ ତମ୍ବୁକୁ ଆସି, ଅସି ଓ ଲୌହ ବର୍ମରେ ସଜ୍ଜିତ ହେଲେ । ତତ୍ପରେ ନିଜର ବିଶ୍ୱସ୍ତ କୁକୁର ରସଓ୍ୟାଲକୁ ସଙ୍ଗରେ ନେଇ ସନ୍ଧ୍ୟା ପୂର୍ବରୁ ସେଣ୍ଟ ଜର୍ଜ ପାହାଡ଼ ଉପରେ ଇଂଲଣ୍ଡର ପତାକାର ପାଦ ଦେଶରେ ଦଣ୍ଡାୟମାନ ହୋଇ ରହିଲେ ।

କ୍ରମେ ସମୟ ଅତିକ୍ରାନ୍ତ ହେବାକୁ ଲାଗିଲା । ପ୍ରାୟ ରାତିର ଅର୍ଦ୍ଧଭାଗ ହେଲା । ଆକାଶରେ ଚନ୍ଦ୍ରଙ୍କର ଉଜ୍ଜ୍ୱଳ କିରଣ ପଡ଼ିଥାଏ । ସେ ରାଜାଙ୍କର ବିଶେଷ ଅନୁଗ୍ରହ ଲାଭ କରିଥିବାରୁ ମନେ ମନେ ଉଲ୍ଲସିତ ହେଉଥାନ୍ତି । ମଝିରେ ମଝିରେ ଏଡ଼ିଥଙ୍କ କଥା ମନେ ପଡୁଥାଏ, କିନ୍ତୁ ତାଙ୍କୁ ସେ ପାଇ ପାରିବେ ବୋଲି ଆଶା କରି ପାରୁ ନ ଥାନ୍ତି ।

ଚତୁର୍ଦ୍ଦିଗ ନୀରବ, ନିସ୍ତବ୍ଧ । କେନେଥ ପତାକାର ପାଦ ଦେଶରେ ଦଣ୍ଡାୟମାନ । ତାଙ୍କର କୁକୁର ରସଓ୍ୟାଲ ନିକଟରେ । ଏହି କୁକୁର ଉପରେ ତାଙ୍କର ଅଟଳ ବିଶ୍ୱାସ । ଶତ୍ରୁର ସୂଚନା ପାଇଲାମାତ୍ରେ ସେ ନିଶ୍ଚୟ ତାର ପ୍ରଭୁଙ୍କୁ ସତର୍କ କରିଦେବ, ଏଥିରେ ସନ୍ଦେହ ନାହିଁ । ପ୍ରାୟ ଦୁଇ ଘଣ୍ଟା ଗତ ହେଲା ପରେ କୁକୁର ଗୁରୁ ଗମ୍ଭୀର ଗର୍ଜନ କଲା । କେନେଥ ଲକ୍ଷ୍ୟ କଲେ, ଗୋଟିଏ ଛାୟାମୂର୍ତ୍ତି ତାଙ୍କ ଆଡ଼କୁ ଅଗ୍ରସର ହେଉଛି ।

କେନେଥ ଉଚ୍ଚ କଣ୍ଠରେ ପଚାରିଲେ, "କିଏ ଆସୁଛ ?" ଉତ୍ତର ମିଳିଲା, "ମୁଁ, ଆଶଙ୍କାର କିଛି ମାତ୍ର କାରଣ ନାହିଁ ।"

କେନେଥ ଦେଖିଲେ ସ୍ୱରଟି ତାଙ୍କର ପରିଚିତ । ଯାଦୁକର କାମନା ନିକଟକୁ ଆସିବାରୁ କେନେଥ ସ୍ପଷ୍ଟ ଜାଣିପାରିଲେ ଆଗନ୍ତୁକ ଖର୍ବକାୟ ଲୋକଟି ହେଉଛି ରିଗ୍ରାର୍ଡଙ୍କ ରାଜମହିଷୀ ବେରେଙ୍ଗେରିଆଙ୍କ ବିଶ୍ୱସ୍ତ ଭୃତ୍ୟ । ବାମନଟି ପ୍ରଥମେ କୁକୁରକୁ ବିଶେଷ ଭୟ କରିଥିଲା; କିନ୍ତୁ କେନେଥଙ୍କଠାରୁ ସୂଚନା ପାଇ କୁକୁର ଚୁପ୍ ହୋଇ ରହିଲା । ଭୃତ୍ୟଟି ସଙ୍କେତ ସ୍ୱରୂପ ଗୋଟିଏ ମଣିଖଚିତ ମୁଦ୍ରିକା ଦେଖାଇଲା । କ୍ଷୀଣ ଚନ୍ଦ୍ରାଲୋକରେ ମଧ୍ୟ କେନେଥ ଏହି ମୁଦ୍ରିକାଟି ଚିହ୍ନି ପାରିଲେ । ଏହାକୁ ସେ ଏଥିପୂର୍ବେ ଏଡ୍‌ଥଙ୍କର ଅଙ୍ଗୁଳିରେ କେତେ ଥର ଦେଖିଥିଲେ । ଏପରି ସମୟରେ ରାଜଅନ୍ତଃପୁରରୁ ଜଣେ ଭୃତ୍ୟର ଆଗମନ ଦେଖି କେନେଥ ବିସ୍ମିତ ହୋଇଗଲେ । ସେ ପଚାରିଲେ, "ତୁମକୁ କିଏ ଏ ମୁଦ୍ରିକା ଦେଇ ପଠାଇଛି ? କି ସମ୍ବାଦ ଆଣିଛ ?"

ବାମନ ଉତ୍ତର କଲା, "ଯିଏ ଏ ମୁଦ୍ରିକା ଦେଇଛନ୍ତି ତାଙ୍କ ପାଖକୁ ଯିବାପାଇଁ ଆଦେଶ ଅଛି । ମୋ ସଙ୍ଗେ ଚାଲନ୍ତୁ ।"

କେନେଥ ଆପତ୍ତି ଜଣାଇ କହିଲେ, "ଆଜି ରାତିରେ ମୋ ଉପରେ ଯେ ଗୁରୁ ଦାୟିତ୍ୱ ଅଛି, ତାହା ସେ ଜାଣି ନାହାନ୍ତି କି ? ପ୍ରଭାତ ହେବା ପର୍ଯ୍ୟନ୍ତ ଏହି ପତାକାଟିକୁ ମୋତେ ଜଗି ରହିବାକୁ ହେବ । ଏହାରି ଉପରେ ମୋର ସମ୍ମାନ ନିର୍ଭର କରୁଛି । ବୋଧହୁଏ ସେ ଏ କଥା ଜାଣିନାହାନ୍ତି ।"

ବାମନ କିଛି ଉତ୍ତର ନଦେଇ ଚାଲିଯିବାକୁ ବାହାରିଲା ।

ସାର୍ କେନେଥ ମୁହୂର୍ତ୍ତେ ଚିନ୍ତା କରି ପୁଣି କହିଲେ, "ଟିକିଏ ଅପେକ୍ଷା କର । ସେ ମହିଳା କଅଣ ଖୁବ୍ ନିକଟରେ ଅଛନ୍ତି ?"

ବାମନ ଉତ୍ତର କଲା, "ଆପଣ ଯଦି ଏଠାରୁ ଯାଇ ନପାରିବେ ତେବେ ସେକଥା ଜାଣିବାରେ କିଛି ଲାଭ ନାହିଁ । କିନ୍ତୁ ପ୍ରକୃତରେ ସେ ଖୁବ୍ ନିକଟରେ ଅଛନ୍ତି ।"

ଦ୍ୱିଧାରେ ପଡ଼ି ସାର୍ କେନେଥ ସେହି ମୁଦ୍ରିକା ଓ ବାମନକୁ ଚାହିଁ ଚାହିଁ ଭାବିଲେ, "ପତାକାକୁ ଜଗି ରହିବା ମୋର କର୍ତ୍ତବ୍ୟ । ରାଜଭଗିନୀ ଏଡ଼ିଥ ଯଦି କୌଣସି ସାହାଯ୍ୟ ପାଇଁ ମୋତେ ଡକାଇଥାନ୍ତି, ତେବେ ସେଠାକୁ ଯିବା ମଧ୍ୟ ମୋର କର୍ତ୍ତବ୍ୟ । କିପରି ଉଭୟ କର୍ତ୍ତବ୍ୟ କରିପାରିବି ? ତେବେ ଏଠାରେ ରସଓ୍ୱାଲ୍ ଅଛି । ବିପଦ ସଙ୍କେତ ପାଇଲା ମାତ୍ରେ ସେ ଭୁକିଉଠିବ । ମୁଁ ତତ୍‌କ୍ଷଣାତ୍ ଭଦ୍ରମହିଳାଙ୍କଠାରୁ ବିଦାୟ ନେଇ ପତାକା ପାଖକୁ ଆସିପାରିବି ।"

ଏହିପରି ବିଚାରି ସେ ବାମନ ସହିତ ଯିବାକୁ ସ୍ଥିର କଲେ । ରସଓ୍ୱାଲ୍‌କୁ ସଙ୍କେତ ଦେଇ ସେ ବାମନର ଅନୁସରଣ କଲେ ।

ବାମନ ତାଙ୍କୁ ରାଣୀଙ୍କ ଶିବିରର ଏକ ଅଂଶରେ ରଖି ଚାଲିଗଲା । କେତେ ମିନିଟ ଗତ ହେଲା, ତଥାପି କାହାର ଦେଖା ନାହିଁ । ସେ ନିଜ ସ୍ଥାନ ଛାଡ଼ି ଆସିଥିବାରୁ ଅନୁତାପ କଲେ । କିନ୍ତୁ ଏତେ ଦୂର ଆସି ଏଡ଼ିଥଙ୍କୁ ଦେଖା ନଦେଇ ଫେରିଯିବେ ବା କିପରି ? ଏହି ସମୟରେ ପାର୍ଶ୍ୱବର୍ତ୍ତୀ ତମ୍ବୁରୁ ନାରୀ କଣ୍ଠର ହାସ୍ୟ ଧ୍ୱନି ଶୁଣାଗଲା । ସେହି ତମ୍ବୁ ମଧ୍ୟରୁ କେନେଥ ଦୁଇଜଣଙ୍କର କଥୋପକଥନ ଶୁଣିପାରିଲେ ।

"ଏବେ କିପରି ତାଙ୍କୁ ଫେରାଇ ଦେବାକୁ ହେବ ?"

"ତୁମେ ଏଡ଼ିଥଙ୍କୁ ଡାକି ଆଣିପାର ।"

"ହଁ, ଡାକି ଆଣିବି । ଏହି ନାଇଟ ଆମ ଏଡ଼ିଥଙ୍କ ପାଇଁ କଣସବୁ କରିଅଛନ୍ତି, ତାହା ସେ ଜାଣିବା ଦରକାର ।"

ରାଣୀ ପରିହାସରେ ମାତ୍ର ତାଙ୍କର ମାନସମ୍ଭ୍ରମ ଏପରିକି ଜୀବନକୁ ମଧ୍ୟ ବିପନ୍ନ କରିଛନ୍ତି, ଏହା ଜାଣିପାରି ସାର୍ କେନେଥ ନିତାନ୍ତ ଦୁଃଖିତ ହେଲେ । ସେ ସେଣ୍ଟ ଜର୍ଜ ପାହାଡ଼କୁ ଫେରି ଯିବାକୁ ବାହାରିଛନ୍ତି, ଏହି ସମୟରେ ଏଡ୍‌ଥ୍ ତମ୍ବୁରେ ପ୍ରବେଶ କରି ରାଣୀଙ୍କୁ କହିଲେ, "ତୁମେ ପରିହାସ କରିବାକୁ ଯାଇ ମୋଠାରୁ କୌଶଳରେ ମୁଦିଟି ନେଇ ଏତେ କାଣ୍ଡ କରିଛ । ମୋ ନାଁ କହି, ମୋର ମାନ ସମ୍ଭ୍ରମ ପଦାରେ ପକାଇ ଦେଇଛ । ଯଦି ପ୍ରକୃତରେ ସାର୍ କେନେଥ ତାଙ୍କ କର୍ତ୍ତବ୍ୟ ଛାଡ଼ି ଏଠାକୁ ଆସିଥାନ୍ତି ତେବେ ତାଙ୍କର ପ୍ରାଣ ରହି ନ ପାରେ । ତୁମେ ଜାଣ, ମୋ ଭାଇ କେଡ଼େ କଠୋର । କୌଣସି ସୈନ୍ୟର କର୍ତ୍ତବ୍ୟରେ ତ୍ରୁଟି ଦେଖିଲେ ସେ ତାକୁ ପ୍ରାଣଦଣ୍ଡ ନ ଦେଇ ଛାଡ଼ିବେ ନାହିଁ ।"

ରାଣୀ ଏଡ୍‌ଥଙ୍କ କଥା ଉପରେ କିଛି ଗୁରୁତ୍ୱ ନ ଦେଇ ହସିହସି କହିଲେ, "ମୋ ଗୃହଚର ତାଙ୍କୁ ଡାକି ଆଣିଛି । ସେ ତ ଏଇ ପାଖରେ ଅଛନ୍ତି ।"

ଭୃତ୍ୟଟି ଏହି ସମୟରେ ଜଣାଇଲା, "ତାଙ୍କୁ କେଉଁଠାକୁ ଆଣିବାକୁ ହେବ ଆପଣ କିଛି କହି ନଥିଲେ । ତେଣୁ ତାଙ୍କୁ ବାହାର ତମ୍ବୁରେ ରଖାଇଛି ।"

ରାଣୀ ଜାଣିପାରିଲେ, କେନେଥ ସବୁକଥା ଶୁଣି ପାରିଥିବେ । ତେଣୁ ସେ ବିରକ୍ତି ପ୍ରକାଶ କଲେ । ମାତ୍ର ଏଡ୍‌ଥ ଘଟଣାର ଗୁରୁତ୍ୱ ବୁଝିପାରିଲେ । ବର୍ତ୍ତମାନ କେନେଥଙ୍କର ସମ୍ମାନର ଏପରିକି ଜୀବନର ମଧ୍ୟ ଆଶା ନାହିଁ । ସାମାନ୍ୟ ପରିହାସର ଏ ଭୀଷଣ ପରିଣାମ । ସେ ହଠାତ୍ ବାହାର ତମ୍ବୁରେ ପ୍ରବେଶ କରି କେନେଥଙ୍କୁ ଏହି ଘଟନା ପାଇଁ କ୍ଷମା ପ୍ରାର୍ଥନା କରି କହିଲେ,

"ଆପଣ ଅତି ଶୀଘ୍ର ସେଣ୍ଟ ଜର୍ଜକୁ ଫେରି ଯାଆନ୍ତୁ । ଭଗବାନଙ୍କ କୃପାରୁ କିଛି ବିପଦ ଘଟି ନ ଥିବ ବୋଲି ମୋର ବିଶ୍ବାସ ।"

ସାର କେନେଥ ଜାନୁପାତ କରି କହିଲେ, " ମୁଁ ମନେ କରିଥିଲି ଯେ ଆପଣ ମୋର କିଛି ସାହାଯ୍ୟ ଚାହିଁଅଛନ୍ତି । ମୋର ଏହି ଭ୍ରମ ଧାରଣା ପାଇଁ କ୍ଷମା ଦିଅନ୍ତୁ ।"

ଏଡ଼ିଥ—"ମୁଁ କ୍ଷମା ଦେବାର ପ୍ରଶ୍ନ କୁଆଡ଼ୁ ଆସିଲା ? ବରଂ ମୋ ସକାଶେ ତୁମେ ବିପଦ ବରଣ କରିଛ । ଶୀଘ୍ର ଯାଇ ନିଜ କର୍ତ୍ତବ୍ୟରେ ଯୋଗ ଦିଅ ।"

ସାର କେନେଥ ବିଦାୟ ନେଇ ଦ୍ରୁତ ପଦରେ ସେଣ୍ଟ ଜର୍ଜକୁ ଆସିଲା ମାତ୍ରେ କୁକୁରଟିର କରୁଣ ଧ୍ୱନି ଶୁଣିପାରିଲେ । ଉପରକୁ ଚାହିଁ ଦେଖିଲେ, ଇଂଲଣ୍ଡର ପତାକା ଅନ୍ତର୍ହିତ । ତାଙ୍କ ମୁଣ୍ଡରେ ବଜ୍ରପାତ ହେଲାପରି ଜଣାଗଲା । ପତାକା ଦଣ୍ଡଟି ଭାଙ୍ଗି ଯାଇ ତଳେ ପଡ଼ିଥିଲା ଓ କୁକୁରଟି ସାଙ୍ଘାତିକ ଭାବରେ ଆହତ ହୋଇ-ଥିଲା । ତା ଦେହର ରକ୍ତ ପତାକା ଦଣ୍ଡ ପାଖରେ ଜମିଯାଇଥିଲା ।

ଏ ଦୃଶ୍ୟ ଦେଖି ସାର୍ କେନେଥ ହତବୁଦ୍ଧି ହୋଇ ପଡ଼ିଲେ ।

## ଦଶ : କେନେଥ ବନ୍ଦୀ

ହତାଶାରେ କେନେଥ ଘଡ଼ିଏ ପର୍ଯ୍ୟନ୍ତ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଲେ । ତାପରେ ସେ ଧୈର୍ଯ୍ୟ ଧରି ପତାକା-ରକ୍ଷକର ସନ୍ଧାନ ନେବାକୁ ଚେଷ୍ଟା କଲେ । କିନ୍ତୁ ଏଥିରେ କିଛି ଫଳ ହେଲା ନାହିଁ । ରସଉଏଲକୁ ପରୀକ୍ଷା କରିବାରୁ ଦେଖାଗଲା ଯେ ତାର ଅବସ୍ଥା ନିତାନ୍ତ ଶୋଚନୀୟ । ତାର ଜୀବନର ଆଶା ଅତି କ୍ଷୀଣ । କେନେଥ ଦୁଃଖରେ କାନ୍ଦି ପକାଇଲେ ।

ଏହି ସମୟରେ ମନୁଷ୍ୟର କଣ୍ଠସ୍ୱର ଶୁଣା ଯିବାରୁ କେନେଥ ଭୁଲପଡ଼ି ମୁସଲମାନ ହକିମ୍‌ଙ୍କୁ ଦେଖିବାକୁ ପାଇଲେ । କେନେଥ ଆଖିର ଲୁହ ପୋଛି ଦେଇ କହିଲେ, "ହକିମ୍ ମହାଶୟ, ଦେଖନ୍ତୁ, ଏଇ କୁକୁରର ଅବସ୍ଥା କଅଣ ହୋଇଛି ? ଆପଣ ଯେ ତାକୁ ଭଲ କରିପାରିବେ ମୋର ସେ ଆଶା ନାହିଁ । ପୁଣି ଆପଣଙ୍କ ଧର୍ମଶାସ୍ତ୍ର ଅନୁସାରେ କୁକୁର ଗୋଟାଏ ଅପବିତ୍ର ଜୀବ ।"

ହକିମ୍—ପ୍ରାଣୀ ମାନେ ପବିତ୍ର ବୋଲି ମୋର ବିଶ୍ୱାସ । ଦୁଃଖ ଯନ୍ତ୍ରଣା ଦୂର କରିବା ଚିକିତ୍ସକର କର୍ତ୍ତବ୍ୟ—ତାହା ମନୁଷ୍ୟର ହେଉ ବା ଇତର ଜୀବର ହେଉ ।

ହକିମ୍ ଏତିକି କହି କୁକୁରଟିକୁ ଉତ୍ତମ ରୂପେ ପରୀକ୍ଷା କଲେ । ତା ବେକ ପାଖରେ ଗୋଟିଏ ଅସ୍ତ୍ରର ଭଗ୍ନ ଅଂଶ ରହିଥିଲା । ଯନ୍ତ୍ର ସହକାରେ ସେ ତାହା ବାହାର କରି ଦେଇ କହିଲେ, "ମୋ ତମ୍ବୁକୁ ନେଇଗଲେ ମୁଁ ତାକୁ ଆରୋଗ୍ୟ କରି-ପାରିବି ବୋଲି ଆଶା କରୁଛି ।"

ସାର୍ କେନେଥ—"ଆପଣ ମୋର ଅନୁଚରଟିକୁ ରୋଗମୁକ୍ତ କରି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରିଅଛନ୍ତି । ଆପଣଙ୍କୁ ମୁଁ କିଛି ପ୍ରତିଦାନ ଦେଇ ପାରିନାହିଁ । ଏବେ ଏହି କୁକୁରଟି ନେଇଯାନ୍ତୁ । ହୁଏତ ଆପଣ ତାର ଜୀବନ ରକ୍ଷା କରିପାରିବେ । ମୋର ଆଉ କୁକୁର ଆବଶ୍ୟକ ହେବ ନାହିଁ । ରସଓ୍ୱାଲ, ଯାଅ—ମୁଁ ତୋଠାରୁ ଚିର ବିଦାୟ ନେଉଛି । ତୁ ଯଦି ଅକ୍ଷତ ରହି ଥାଆନ୍ତୁ ଓ ମୁଁ ତୋବଦଳେ କ୍ଷତବିକ୍ଷତ ହୋଇ ମୁମୂର୍ଷୁ ଅବସ୍ଥାରେ ପଡ଼ିଥାନ୍ତି, ତାହାହେଲେ ମୁଁ କେଡ଼େ ସୁଖୀ ହୋଇ ନଥାନ୍ତି ।"

କୁକୁର କିପରି ଆହତ ହେଲା, ତାହା ହକିମ୍ ପଚାରିଲେ । ସଙ୍ଗେ ସଙ୍ଗେ ପତାକା ଅପହୃତ ହୋଇଥିବା ଓ ପତାକାର ଦଣ୍ଡ ଭଗ୍ନ ହୋଇ ତଳେ ପଡ଼ିଥିବା ଲକ୍ଷ୍ୟ କରି ହକିମ୍ କହିଲେ, "ତୁମର ଶରୀରରେ କ୍ଷତ ଚିହ୍ନ ନାହିଁ । ମୋର ବିଶ୍ୱାସ, କୌଣସି ଦୁର୍ବୃତ୍ତ ତୁମକୁ କୌଶଳରେ ଏଠାରୁ ଅନ୍ୟତ୍ର ନେଇ ଯାଇଥିଲା ଓ ସେହି ଅବସରରେ ଏ ସବୁ କାଣ୍ଡ ଘଟିଛି ।"

ସାର୍ କେନେଥ—ତାହା ହୋଇଥିଲେ କଣ ମୋର ଅପରାଧର ଗୁରୁତ୍ୱ କମିଯିବ ?

ହକିମ୍—ତୁମେ ତ ଏକ ସ୍ଥାନରେ ଚିରଦିନ ରହିବାକୁ ବାଧ୍ୟ ନୁହଁ । ତୁମେ ସ୍ୱଚ୍ଛନ୍ଦରେ ସାଲାଦିନଙ୍କ ନିକଟରେ ରହିପାର । ତୁମ ପରି ଜଣେ ବୀରକୁ ସେ ଆନନ୍ଦରେ ଗ୍ରହଣ କରିବେ ।

କେନେଥ—କର୍ତ୍ତବ୍ୟରେ ହେଳା କରି ମୁଁ ଗୋଟିଏ ଅପରାଧ କରିଛି । ରାଜା ରିଚାର୍ଡ଼ଙ୍କୁ ତ୍ୟାଗ କରି ସାଲାଦିନଙ୍କ ଆଶ୍ରୟ ନେଲେ ଆଉ ଗୋଟିଏ ଅପରାଧ କରିବା ଛଡ଼ା ଅନ୍ୟ କିଛି ହେବ ନାହିଁ ।

ହକିମ୍—ତୁମେ ପରା ସାଲାଦିନଙ୍କ ସହିତ ଶାନ୍ତି ସ୍ଥାପନ ସମ୍ପର୍କରେ ସମ୍ବାଦ ନେଇ ଯାଇଥିଲ ? ବୋଧହୁଏ ସମ୍ବାଦଟି ତୁମେ

ଭଲରୂପେ ଜାଣିବାକୁ ଚେଷ୍ଟା କରି ନଥିଲ । ସାଲାଦ୍ଦିନ ରିଚାର୍ଡ଼ଙ୍କ ବୀରତ୍ୱ ଓ ସାଧୁତାରେ ମୁଗ୍‌ଧ । ରିଚାର୍ଡ଼ ଏ ମିଳିତ ରାଜାମାନଙ୍କୁ ଯେପରି ଘୃଣା କରନ୍ତି, ସାଲାଦ୍ଦିନ ମଧ୍ୟ ସେହିପରି ସେମାନଙ୍କୁ ଘୃଣା କରନ୍ତି । ତେଣୁ ରିଚାର୍ଡ଼ଙ୍କ ସହିତ ସମ୍ମାନଜନକ ସର୍ତ୍ତରେ ସନ୍ଧି ସ୍ଥାପନ କରିବା ସାଲାଦ୍ଦିନଙ୍କର ଆନ୍ତରିକ ଇଚ୍ଛା । ଆଉ ଗୋଟିଏ କଥା ବୋଧହୁଏ ତୁମେ ଜାଣ ନାହିଁ । ସାଲାଦ୍ଦିନ ରିଚାର୍ଡ଼ଙ୍କ ଭଉଣୀ ଏଡ଼ିଥଙ୍କୁ ବିବାହ କରି ଏହି ସନ୍ଧିକୁ ଦୃଢ଼ କରିବାକୁ ପ୍ରସ୍ତୁତ ।”

କେନେଥ ହୃଦୟର କୋହକୁ ଗୋପନ ରଖି କହିଲେ, “ଏପରି ବିବାହ ପ୍ରସ୍ତାବରେ କିଏ ରାଜି ହେବ ? ସାଲାଦ୍ଦିନଙ୍କ ହାରେମ୍‌ରେ କେତେ ରାଣୀ ଥିବେ । ରିଚାର୍ଡ଼ଙ୍କ ଭଉଣୀ ସେମାନଙ୍କ ଭିତରେ ଜଣେ ହୋଇ ରହିବେ—ଏଥିରେ କିଅଣ ରିଚାର୍ଡ଼ ରାଜି ହେବେ ?”

କେନେଥଙ୍କ ମନୋଭାବ ବୁଝିପାରି ହକିମ୍ କହିଲେ, “ଫ୍ରାନସର ରାଜା ଫିଲିପ ଓ ରିଚାର୍ଡ଼ଙ୍କ ଅନୁଗତ ସମସ୍ତ ରାଜା ଏ ପ୍ରସ୍ତାବ ଜାଣିଛନ୍ତି । ସେମାନେ ଏ ପ୍ରସ୍ତାବରେ ସ୍ୱୀକୃତ । ଧର୍ମ ଦୃଷ୍ଟିରୁ ମଧ୍ୟ ଆପତ୍ତି ହେବନାହିଁ । ଟାୟାରର ବିଶପ ଭାର ନେଇଛନ୍ତି, ସେ ଏ ପ୍ରସ୍ତାବ ରିଚାର୍ଡ଼ଙ୍କୁ ଜଣାଇ ତାଙ୍କୁ ସ୍ୱୀକୃତ କରାଇବେ । ସାଲାଦ୍ଦିନଙ୍କ ପାଖକୁ ତୁମେ ଗଲେ ସେ ତୁମକୁ ଆନନ୍ଦରେ ଗ୍ରହଣ କରିବେ । ସେତେବେଳକୁ ସାଲାଦ୍ଦିନ ଆଉ ରିଚାର୍ଡ଼ଙ୍କର ଶତ୍ରୁ ନହୋଇ ବନ୍ଧୁ ହୋଇସାରିଥିବେ ।”

ସାର୍ କେନେଥ କ୍ରୋଧରେ ହକିମ୍‌ଙ୍କର ପ୍ରାଣ ନେଇଥାନ୍ତେ; କିନ୍ତୁ ତାଙ୍କର ଉପକାର ସ୍ମରଣ କରି ସେଥିରୁ ବିରତ ହେଲେ । ହକିମ୍ ନିଜର ଯୁକ୍ତିକୁ ଦୃଢ଼ କରିବା ପାଇଁ କହିଲେ, “ମନେ-ରଖିଥାଅ, ଏଠାରେ ତୁମେ ରହିବା ଅର୍ଥ ନିଶ୍ଚିତ ମୃତ୍ୟୁ ।”

ସାର୍ କେନେଥ—ହକମ୍ ମହାଶୟ, ମୁଁ ଜଣେ ଧର୍ମଯୋଦ୍ଧା । କୌଣସି ଅପରାଧରେ ନିୟମାନୁସାରେ ପ୍ରାଣଦଣ୍ଡରେ ଦଣ୍ଡିତ ହେବାକୁ ପଡ଼ିଲେ, ସେଥିରୁ ଖସି ପଳାଇବା ମୋର ଧର୍ମ ବିରୁଦ୍ଧ । ମୃତ୍ୟୁ ଦଣ୍ଡ ମୋର ପ୍ରାପ୍ୟ, ତାକୁ ଗ୍ରହଣ କରି ନେବାକୁ ମୁଁ ପ୍ରସ୍ତୁତ ।

ହକମ୍ ଧୀର ପଦରେ ପ୍ରସ୍ଥାନ କଲେ । କେନେଥ ରାଜାଙ୍କୁ ଏହି ଷଡ଼ଯନ୍ତ୍ର ଜଣାଇବା ପାଇଁ ରାଜାଙ୍କ ତମ୍ବୁ ଆଡ଼କୁ ଅଗ୍ରସର ହେଲେ ।

ସେତେବେଳକୁ ପ୍ରଭାତ ହେଲାଣି । କେହି ଜଣେ ରାଜାଙ୍କ ତମ୍ବୁ ଆଡ଼କୁ ଆସୁଥିବାର ଦେଖି ଉଭରକ୍ସ ପଚାରିଲେ, "କିଏ ଆସୁଛି ?"

ବିଷଣ୍ଣମୁଖରେ କେନେଥ ଆସୁଥିବାର ଦେଖି ଉଭରକ୍ସ କହିଲେ, "ତୁମେ ଆସିଲ କୁଆଡ଼େ ଏପରି ଅସମୟରେ ।"

ରିଚାର୍ଡ୍ ନିଦରୁ ଉଠିସାରିଥିଲେ । ସେ କହିଲେ, "କେନେଥଙ୍କୁ ଆସିବାକୁ ଦିଅ । ସାରା ରାତି ଇଂଲଣ୍ଡର ପତାକା ସେଣ୍ଟ ଜର୍ଜ ଉପରେ ଉଡ଼ୁଥିଲା, ଏହି ସମ୍ବାଦ ଦେବାକୁ କେନେଥ ଆସିଥିବେ । ଏଇ କଥା ନା କେନେଥ ?"

କେନେଥ ଦୁଃଖିତ ଭାବରେ ଉତ୍ତର କଲେ, "ମୁଁ ହତଭାଗ୍ୟ, ପତାକା ଚୋରି ହୋଇଯାଇଛି ।"

ରିଚାର୍ଡ୍ କଥାଟା ଅବିଶ୍ୱାସ କଲା ପରି କହିଲେ, "ଅଥଚ ତୁମେ ସେ ଖବର ଦେବାକୁ ବଞ୍ଚି ରହିଛ ? ଅସମ୍ଭବ । ତା ହୋଇ ନ ପାରେ । କାହିଁ, ତୁମଠାରେ କୌଣସି କ୍ଷତ ଚିହ୍ନ ଦେଖାଯାଉ ନାହିଁ ? କହ, ଘଟଣା କଅଣ ? ନିଶ୍ଚୟ ତୁମର କଥା ମିଥ୍ୟା ।"

"ମିଥ୍ୟା କଥା ?"—କେନେଥ ଗର୍ଜି ଉଠିଲେ । କିନ୍ତୁ ମୁହୂର୍ତ୍ତକ ମଧ୍ୟରେ ତାଙ୍କର ସ୍ୱର ବଦଳି ଗଲା । ସେ ଗଭୀର ଦୁଃଖରେ କହିଲେ, "ମହାରାଜ, ମୁଁ ନିରୁପାୟ । ସବୁ ଅପମାନ ମୋତେ

ସହିବାକୁ ହେବ । ମୁଁ ମହାରାଜାଙ୍କୁ ମିଥ୍ୟା କହି ନ ପାରେ । ପ୍ରକୃତରେ ପତାକା ଅପହୃତ ହୋଇଅଛି ।"

ରାଜା ଚିତ୍କାର କରି ଉଠିଲେ, "ହେ ଭଗବାନ, ଲୋକଟା କହୁଛି କଅଣ ? ହୁଭକ୍‌ସ, ତୁମେ ଯାଇ ଘଟନା କଅଣ ଦେଖି ଆସ ତ । ନା, ନା, ତା ହୋଇ ନ ପାରେ । ଲୋକଟାର ମଥା ବିଗିଡ଼ି ଯାଇଛି । ମୁଁ ଜାଣେ କେନେଥ ଜଣେ ସାହସୀ ବୀର । ହୁଭକସ୍, ଶୀଘ୍ର ଯାଇ ବୁଝିଆସ; ନ ହେଲେ ଜଣେ ବିଶ୍ୱାସୀ ଲୋକକୁ ପଠାଇଦିଅ ।"

ଏହି ସମୟରେ ସାର୍ ନେଭିଲ ନାମକ ଜଣେ ନାଇଟ ଦ୍ରୁତ ପଦରେ ଆସି ପହଞ୍ଚିଗଲେ । ସାର୍ ନେଭିଲ୍ ରାଜାଙ୍କର ଜଣେ ବିଶ୍ୱସ୍ତ ବନ୍ଧୁ । ସେ କେନେଥଙ୍କୁ ଲକ୍ଷ୍ୟ ନ କରି କହି ଉଠିଲେ, "ପତାକା ଚୋରି ହୋଇ ଯାଇଛି । ପତାକା ରକ୍ଷକ ନାଇଟ ବୋଧହୁଏ ନିହତ । ମୁଁ ସେଠାରେ ପ୍ରଚୁର ରକ୍ତ ଜମିଥିବାର ଦେଖିଲି ।" ଏହି ସମୟରେ ତାଙ୍କର ଦୃଷ୍ଟି ପଡ଼ିଲା କେନେଥଙ୍କ ଉପରେ । ସେ ଚମକି ଉଠି କହିଲେ, "ଏ କଅଣ ଦେଖୁଛି ? କେନେଥ ଯେ ଏଠାରେ ?"

ସିଂହ ଗର୍ଜନ କଲା ପରି ରିଚାର୍ଡ଼ କହି ଉଠିଲେ, "କଅଣ ଦେଖୁଛ ? ଦେଖୁଛ ଗୋଟାଏ ବିଶ୍ୱାସଘାତକକୁ । ଅଳ୍ପ ଦେଖିବ, ଏଇକ୍ଷଣି ଦେଖିବ, ସେହି ବିଶ୍ୱାସଘାତକର ଉପଯୁକ୍ତ ଶାସ୍ତି—ତାର ମୃତ୍ୟୁ ।" କ୍ରୋଧରେ ଅଧୀର ହୋଇ ରିଚାର୍ଡ଼ ରଣକୁଠାରଟି ଟାଣି ଆଣିଲେ ଏବଂ ଆଘାତ କରିବାକୁ ଉଦ୍ୟତ ହେଲେ ।

କେନେଥଙ୍କର ମୁଖ ପାଣ୍ଡୁର; ଶିରସ୍ତ୍ରାଣଶୂନ୍ୟ ମସ୍ତକ ଅବନତ । ମୁଖରେ ଭୟର ଚିହ୍ନ ନାହିଁ । ରିଚାର୍ଡ଼ କୁଠାରଟି ପୁଣି ରଖି ଦେଇ କହିଲେ, "କେନେଥ, ମୁଁ ତୁମର ବୀରତ୍ୱ ସ୍ୱଚକ୍ଷୁରେ

ଦେଖନ୍ତୁ । ସେଣ୍ଟ ଜର୍ଜରେ ରକ୍ତ ଜମିଥିଲା; ନିଶ୍ଚୟ ତୁମେ ଶତ୍ରୁ ସହିତ ଯୁଦ୍ଧ କରିଥିବ । ଯଦି ଜଣେ ହେଲେ ଶତ୍ରୁକୁ ମାରିଥିବାର ଶୁଣେ ତୁମକୁ ପ୍ରାଣଦଣ୍ଡରୁ ଅବ୍ୟାହତି ମିଳିବ—କୁହ ।"

ବିନୀତ ଭାବରେ କେନେଥ କହିଲେ, "ମହାରାଜ, ସେ ରକ୍ତ ମୋର ନୁହେଁ କି ଶତ୍ରୁର ନୁହେଁ । ତା ହେଉଛି ମୋର ପ୍ରଭୁଭକ୍ତ କୁକୁର ରସଓ୍ୱାଲର ।"

ରିଚାର୍ଡ୍—ସ୍କଟଲଣ୍ଡର ଗୋଟାଏ ଲୋକକୁ ଏତେ ଦୂର ବିଶ୍ୱାସ କରିବା ମୋର ଏକ ଭୁଲ । ସ୍କଟଲଣ୍ଡର ରାଜା ଉଇଲିୟମ ଏ ଧର୍ମ-ଯୁଦ୍ଧରେ ମୋତେ ସାହାଯ୍ୟ କରିବାକୁ କହି ପ୍ରତାରଣା କରି ପଛଘୁଞ୍ଚା ଦେଇ ରହିଲେ । ଯେତେହେଲେ କେନେଥ ତ ସେହି ସ୍କଟଲଣ୍ଡର ଲୋକ ।

କେନେଥ—ମହାରାଜ, ଉଇଲିୟମ ପ୍ରତାରଣା କରି ନାହାନ୍ତି । ସେ ସୈନ୍ୟଦଳ ସହିତ ନିଜେ ଯୋଗ ଦେଇ ପାରି ନାହାନ୍ତି ସତ୍ୟ କିନ୍ତୁ ପ୍ରତାରଣା କଲେ କିପରି ?

ରିଚାର୍ଡ୍—ଚୁପ୍ କର ନିର୍ଲଜ୍ଜ । ଡ଼ିଭକ୍ସ, ଏ ଲୋକଟାର ଚେହେରାକୁ ଦେଖ । ସେ କାପୁରୁଷ ହୋଇପାରେ, କୃତଘ୍ନ ହୋଇପାରେ, କିନ୍ତୁ ଭୟାର୍ତ୍ତ ନୁହେଁ । ମୁଁ ତାକୁ ହତ୍ୟା କରିବାକୁ କୁଠାର ଉଠାଇଲା ବେଳେ ମଧ୍ୟ ତା ମୁହଁରେ ଭୟର ଚିହ୍ନ ନ ଥିଲା ।

ଟିକଏ ନୀରବ ରହି କେନେଥ କହିଲେ, "ମହାରାଜ, ମୁଁ ଜୀବନ ଭିକ୍ଷା କରିବାକୁ ଚାହେଁ ନାହିଁ । ମୋ ଅପରାଧର ଉପଯୁକ୍ତ ଦଣ୍ଡ ହେଉଛି ମୃତ୍ୟୁ । ମୁଁ ସେ ଦଣ୍ଡ ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇ ଅଛି । ତା ପୂର୍ବରୁ ଆପଣଙ୍କୁ ଗୋଟିଏ କଥା ଜଣାଇ ଦେବାକୁ ଚାହେଁ । ତାହା ଉପରେ ଆପଣଙ୍କର ଗୌରବ ନିର୍ଭର କରେ । ସେ କଥା ଆପଣଙ୍କ ଛଡ଼ା ଅନ୍ୟ କେହି ଜାଣିବା ଉଚିତ ନୁହେଁ ।"

ରାଜାଙ୍କର ସଙ୍କେତରେ ରକ୍ଷୀମାନେ ବାହାରି ଗଲେ । ରହିଲେ କେବଳ ଡ଼ଗ୍‌ଲସ୍ ।

କେନେଥ—ଡ଼ଗ୍‌ଲସ୍ ଅପଣଙ୍କର ବିଶ୍ୱସ୍ତ ସହଚର । ସେ ରହିଲେ କିଛି କ୍ଷତି ନାହିଁ । ମୁଁ ବିଶ୍ୱସ୍ତ ସୂତ୍ରରୁ ଜାଣି ପାରିଛି, ରାଜାମାନେ ସାଲ୍ଲାଦିନଙ୍କଠାରୁ ଶାନ୍ତି କ୍ରୟ କରିବାକୁ ବସିଛନ୍ତି । ଆପଣଙ୍କ ଭଗିନୀ ଏଡ଼ିଥଙ୍କୁ ତାଙ୍କ ସହିତ ବିବାହ ଦେବା ହେଉଛି ସେହି ଶାନ୍ତିର ମୂଲ୍ୟ ।

ରିଚ୍ଚାର୍ଡ଼—ଚୁପ୍ କର ସଇତାନ, ମୋ ଭଉଣୀଙ୍କ ନାମ ଧର ନାହିଁ । ସେ କାହାକୁ ବିବାହ କରିବେ, ସେଥିରେ ତୋର କଅଣ ଅଛି ? ମୁଁ ଯଦି ସାଲ୍ଲାଦିନଙ୍କ ସତ୍ୟନିଷ୍ଠା ଓ ବୀରତ୍ୱ ଦେଖି ତାଙ୍କ ସହିତ ବନ୍ଧୁତା ସ୍ଥାପନ କରେ, ସେଥିରେ କାଏ କଅଣ କହିବାର ଅଛି ?

କେନେଥ—ଅଳ୍ପ ସମୟ ପରେ ଏ ସଂସାର ସଙ୍ଗେ ମୋର କିଛି ସମ୍ବନ୍ଧ ରହିବ ନାହିଁ । ତେଣୁ କାହା ବିଷୟରେ କିଛି କହିବା ଉଚିତ ନୁହେଁ । କିନ୍ତୁ ସାଲ୍ଲାଦିନଙ୍କ ସଙ୍ଗେ ଆପଣଙ୍କ ଭଉଣୀ ଏଡ଼ିଥଙ୍କର······

ରିଚ୍ଚାର୍ଡ଼—ପୁଣି ତାଙ୍କ ନାମ ଧରୁଛୁ ? ତାଙ୍କ କଥା ଏକାବେଳେ ଭୁଲିଯା ।

କେନେଥ—ତାଙ୍କର ନାମ ଉଚ୍ଚାରଣ କରିବି ନାହିଁ, ତାଙ୍କୁ ସ୍ମୃତି ପଟରୁ ଲିଭାଇ ଦେବି ? ଏହା କି ସମ୍ଭବ ? ମୋର ଶିରଚ୍ଛେଦ ବେଳେ ମଧ୍ୟ ମୋ ତୁଣ୍ଡରୁ ତାଙ୍କର ନାମ ଛଡ଼ା ଅନ୍ୟ ନାମ ବାହାରିବ ନାହିଁ । ତାଙ୍କ ଛଡ଼ା ଅନ୍ୟ କାହାର ମୁଖ ମୋ ସ୍ମୃତିରେ ପଡ଼ିବ ନାହିଁ । ମହାରାଜ । ଶତ ଚେଷ୍ଟା ସତ୍ତ୍ୱେ ମୁଁ ଏଥିରୁ ନିବୃତ୍ତ ହୋଇ ପାରିବି ନାହିଁ ।

ବର୍ଣ୍ଣୃଡ଼—କେନେଥଙ୍କ ପ୍ରଳାପ ଶୁଣି ମୁଁ ପାଗଳ ହୋଇଯିବି ଦେଖୁଛି ।

ତମ୍ବୁ ବାହାରୁ ଜଣେ ରକ୍ଷୀ ସମ୍ବାଦ ଦେଲା—ମହାରାଣୀ ରାଜାଙ୍କ ସାକ୍ଷାତ ଚାହାନ୍ତି ।

ବର୍ଣ୍ଣର୍ଡ଼ ଏହି ସମ୍ବାଦ ପାଇବା ମାତ୍ରେ କେନେଥଙ୍କୁ ସେଠାରୁ ନେଇଯିବାକୁ ଡଗ୍‌ଲାସ୍‌ଙ୍କୁ ଆଦେଶ ଦେଇ କହିଲେ, "ତାର କିଛି ପାପ ସ୍ୱୀକାର କରିବାକୁ ଥିଲେ ଜଣେ ଧର୍ମଯାଜକଙ୍କୁ ଡାକି ଦେଇପାର । ଯାହାହେଉ କେନେଥ ବୀର । ତାକୁ ବୀରୋଚିତ ମୃତ୍ୟୁ ଦଣ୍ଡ ଦେବା ଉଚିତ । ତାର ଶିରଚ୍ଛେଦ କରାଯିବ ଓ ଶବକୁ ଯଥାବିଧି କବର ଦିଆଯିବ ।"

ଡଗ୍‌ଲାସ କେନେଥଙ୍କୁ ଅନ୍ୟ ଗୋଟିଏ ତମ୍ବୁରେ ଶୃଙ୍ଖଳାବଦ୍ଧ କରି କହିଲେ—ମହାରାଜ ଅନୁଗ୍ରହ କରି ତୁମର ବୀରୋଚିତ ମୃତ୍ୟୁର ବ୍ୟବସ୍ଥା କରିଅଛନ୍ତି ।

କେନେଥ କ୍ଷୀଣ ସ୍ୱରରେ କହିଲେ, "ନିଶ୍ଚୟ ଏହା ମହାରାଜଙ୍କର ମୋ ପ୍ରତି ଅନୁଗ୍ରହ । କିନ୍ତୁ ମୋର ଏ ପରିଣାମ ହେଲା ବୋଲି ସ୍କଟଲଣ୍ଡରେ ମୋର ପରିବାର ଜାଣିପାରିବେ ନାହିଁ ।"

ଡଗ୍‌ଲାସ୍‌ଙ୍କ କଠୋର ହୃଦୟ ମଧ୍ୟ ତରଳିଗଲା । ସେ ଚକ୍ଷୁରୁ ଲୋତକ ପୋଛି ଦେଇ କହିଲେ, "ମୁଁ ତୁମ ପାଇଁ ଜଣେ ଧର୍ମଯାଜକଙ୍କୁ ଡକାଇ ଆଣିଛି । ମୃତ୍ୟୁ ପୂର୍ବରୁ ଯଦି ତୁମର କିଛି କହିବାର ଥାଏ, ତାଙ୍କୁ କହିପାର ।"

କେନେଥ ଏଥିପାଇଁ ତାଙ୍କୁ ଧନ୍ୟବାଦ ଦେଲେ ।

ଡଗ୍‌ଲସ ଚାଲିଯାଉଥିଲେ । କିଅଣ ବିଚାରି ଫେରିପଡ଼ି କହିଲେ, "କେନେଥ, ତୁମେ ଯୁବକ । ତୁମର ପ୍ରାଣ ରକ୍ଷାର କିଅଣ କିଛି ଉପାୟ ନାହିଁ ? ମୁଁ ଜାଣେ, ତୁମେ ଭୀରୁ କାପୁରୁଷ ନୁହଁ କି

ବିଶ୍ୱର୍ତ୍ତଙ୍କ ନିକଟରେ କୃତଘ୍ନତା କରିନାହିଁ । ନିଶ୍ଚୟ ତୁମେ କୌଣସି ପ୍ରତାରଣାରେ ପଡ଼ି କର୍ତ୍ତବ୍ୟରେ ହେଳା କରିଛ । ହୁଏ ତ କୌଣସି ରମଣୀର କାତର କ୍ରନ୍ଦନ ଶୁଣି ତୁମେ ପତାକା ଛାଡ଼ି ଚାଲି ଯାଇଛ । ସେଥିପାଇଁ ଚିନ୍ତା ନାହିଁ । ସମସ୍ତଙ୍କ ଜୀବନରେ ଏପରି ବେଳେ ବେଳେ ଘଟିଥାଏ । ମୋ ଆଗରେ ପ୍ରକୃତ ଘଟନା ପ୍ରକାଶ କର । ବିଶ୍ୱର୍ତ୍ତ କୋପନ ପ୍ରକୃତିର ଲୋକ ସତ; କିନ୍ତୁ କ୍ରୋଧ ଚାଲିଗଲେ ତାଙ୍କର ଦୟାଳୁତା ପ୍ରକାଶ ପାଇଥାଏ ।”

କେନେଥ କିଛି କହି ନ ପାରି ମୁଣ୍ଡ ତଳକୁ ପୋତି ରହିଲେ । ଅଗତ୍ୟା ଉଭକ୍ସ ଶୃଙ୍ଖଳାବଦ୍ଧ କେନେଥଙ୍କୁ ତମ୍ବୁରେ ରଖି ବାହାରି ଗଲେ ।

## ଏଗାର : ପ୍ରାଣଦଣ୍ଡରୁ ମୁକ୍ତି

ମହାରାଣୀ ଙ୍କ ପରିସ୍ଥିତିରେ ପଡ଼ି ରାଜାଙ୍କ ସାକ୍ଷାତ ପାଇଁ ତମ୍ଭୁକୁ ଆସିଥିଲେ, ତାହା ଏଠାରେ କହିବା ଦରକାର ।

ନେଭାରର ରାଜାଙ୍କ କନ୍ୟା ବେରେଙ୍ଗିଆ ପରମ ରୂପବତୀ ଥିଲେ । ରୂପରେ ସେ ସମଗ୍ର ଇଉରୋପରେ ଖ୍ୟାତି ଲଭ କରିଥିଲେ । ତାଙ୍କର କୃଶ କଟି, ଘନକୃଷ୍ଣ କେଶପାଶ, ଚନ୍ଦ୍ରମୁଖ ଅନେକ ଅନେକ ରାଜା ଓ ରାଜପୁତ୍ରଙ୍କର କାମ୍ୟ ଥିଲା । କିନ୍ତୁ ଶେଷରେ ସେ ଇଂଲଣ୍ଡର ରାଜା ରିଚାର୍ଡ଼ଙ୍କୁ ବିବାହ କରିଥିଲେ । ଯେଉଁ ସମୟର କଥା କୁହାଯାଉଅଛି, ସେ ସମୟକୁ ତାଙ୍କର ବୟସ ଏକୋଇଶ ବର୍ଷ ମାତ୍ର । ତାଙ୍କର ପ୍ରକୃତି ଧୀର ସ୍ଥିର ହେଲେହେଁ ବେଳେ ବେଳେ ସେ ନିର୍ଦ୍ଦୟତା ପ୍ରକାଶ କରୁଥିଲେ । ଯୌବନସୁଲଭ ଆମୋଦ ବିଳାସ ପ୍ରତି ତାଙ୍କର ଆସକ୍ତି ଥିଲା. କିନ୍ତୁ ଇଂଲଣ୍ଡର ରାଣୀଙ୍କଠାରେ ଯେପରି ଉଦାରତା, ଗାମ୍ଭୀର୍ଯ୍ୟ ଓ ଦୃଢ଼ତା ରହିବା ଆଶା କରାଯାଏ,ତାଙ୍କଠାରେ ତାହାର ଅଭାବ ଥିଲା । ଅନେକ ସମୟରେ ରାଜା ରିଚାର୍ଡ଼ ଗୁରୁତର ବ୍ୟାପାରରେ ରାଣୀଙ୍କର ପରାମର୍ଶ ନ ନେଇ ଭଉଣୀ ଏଡିଥଙ୍କର ପରାମର୍ଶ ନେଉଥିଲେ । ଏହା ଫଳରେ ରାଣୀଙ୍କର ଈର୍ଷା ଜାତ ହେଉଥିଲା ଓ ସୁଯୋଗ ପାଇଲେ ଉପହାସ କରି ସେ ଏଡ଼ିଥଙ୍କୁ ଅପଦସ୍ଥ କରୁଥିଲେ ।

ଏନ୍‌ଗାଜୀ ଆଶ୍ରମରେ ପ୍ରାର୍ଥନା କରିବାକୁ ଯାଇ ଥିବା ସମୟରେ ଏଡ଼ିଥ କପର୍ କେନିଥଙ୍କ ଉଦ୍ଦେଶ୍ୟରେ ଗୋଲାପଫୁଲ ଫିଙ୍ଗିଥିଲେ ତାହା ରାଣୀଙ୍କର ଜଣେ ସହଚରୀ ଲକ୍ଷ୍ୟ କରିଥିଲେ । ସେ ରାଣୀଙ୍କୁ

ଉକ୍ତ ଘଟନା କହିଥିଲେ । ରାଣୀ କୌଶଳ କରି ଏଡ଼ୱାର୍ଡଙ୍କ ଠାରୁ ତାଙ୍କ ମୁଦିଟି ମାଗିଆଣି ବାମନ ହାତରେ ପଠାଇ କେନେଥଙ୍କୁ ତାଙ୍କ କର୍ତ୍ତବ୍ୟ କ୍ଷେତ୍ରରୁ ଶିବିରକୁ ଟାଣି ଆଣିଥିଲେ । ରାଣୀ ପରିହାସ ଛଳରେ ଯାହା କରିଥିଲେ ତାହା ଯେ ପରିଣାମରେ କେନେଥଙ୍କ ମୃତ୍ୟୁର କାରଣ ହେବ, ତାହା ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ । କେନେଥଙ୍କ ମୃତ୍ୟୁ ଦଣ୍ଡର ସମ୍ବାଦ ପାଇ ରାଣୀ ନିଜର ଦୋଷ ଘୋଡ଼ାଇବା ପାଇଁ ପାଖ ଲୋକଙ୍କ ଉପରେ ଦୋଷାରୋପ କଲେ । ସେ ପ୍ରତିକାରର ଉପାୟ ଚିନ୍ତା ନ କରି ଏଡ଼ିଥଙ୍କୁ ଅଶ୍ୱାସନା ଦେବାକୁ ଚେଷ୍ଟା କଲେ । କିନ୍ତୁ ଏଡ଼ିଥ ଘଟଣାର ଗୁରୁତ୍ୱ ଜାଣିପାରି ରାଣୀଙ୍କୁ ଏକାନ୍ତ ଅନୁରୋଧ କଲେ, "ଚାଲ ରାଜାଙ୍କ ତମ୍ବୁକୁ ଯାଇ କେନେଥଙ୍କର ଜୀବନ ଭିକ୍ଷା କରିବା ।"

ଏତେବେଳକୁ ରାଣୀ ପ୍ରକୃତ ଅବସ୍ଥା ବୁଝି ପାରିଲେ । ଏଡ଼ିଥଙ୍କ ଅନୁରୋଧ ରକ୍ଷା କରି ସେ କେତେ ଜଣ ସହଚରୀଙ୍କୁ ସଙ୍ଗରେ ନେଇ ରାଜାଙ୍କ ତମ୍ବୁ ନିକଟରେ ପହଞ୍ଚିଲେ ।

ଏଡ଼ିଥ ଓ ରାଣୀ ରକ୍ଷୀମାନଙ୍କର ବାରଣ ସତ୍ତ୍ୱେ ରାଜାଙ୍କ ତମ୍ବୁରେ ପ୍ରବେଶ କଲେ । ରାଣୀ ରାଜାଙ୍କ ଶଯ୍ୟା ପାର୍ଶ୍ୱକୁ ଯାଇ ତାଙ୍କର କର ଚୁମ୍ବନ କଲେ । ତହୁଁ ରାଜା ତାଙ୍କ ଆଗମନର କାରଣ ପଚାରିଲେ । ରାଣୀ କେନେଥଙ୍କର ପ୍ରାଣ ଦଣ୍ଡ ଆଦେଶ ପ୍ରତ୍ୟାହାର କରି ନେବାକୁ ପ୍ରାର୍ଥନା କରି କହିଲେ, "ଇଂଲଣ୍ଡର ପତାକାଟା କିଏ ଚୋରି କରି ନେଇଛନ୍ତି ତ । ସାମାନ୍ୟ କନା ଖଣ୍ଡେ । ମୁଁ ସୁନ୍ଦର କନାରେ ସେହିପରି ଅନେକ ପତାକା ତିଆରି କରି ଆପଣଙ୍କୁ ଦେବି ।"

ଏଥିରେ ରାଜା ଶାନ୍ତ ହେବା ପରିବର୍ତ୍ତେ ଅଧିକ କ୍ରୁଦ୍ଧ ହୋଇ ଉଠିଲେ । ସେ କହିଲେ, "ରାଣି, ତୁମେ ସେ କନା ଖଣ୍ଡକର ମୂଲ୍ୟ

କାହୁଁ ବୁଝିବ ? ସେ ପତାକା ପ୍ରତି ଅପମାନ ହେଉଛି, ମୋ ପ୍ରତି ଅପମାନ । ଯାହାର ଅବହେଳାରୁ ମୋର ଅପମାନ ହେଲା, ତାର ଉପଯୁକ୍ତ ଦଣ୍ଡ ହେଉଛି ମୃତ୍ୟୁ ।”

ଏଡ଼ଥ ଜାନୁପାତ କରି କହିଲେ, “ମୋର ପ୍ରାର୍ଥନା, ଭାଇ ପାଖରେ ଭଉଣୀର ଅଳି ନୁହେଁ । ମୁଁ ରାଜାଙ୍କଠାରେ ନ୍ୟାୟ ବିଚାର ପ୍ରାର୍ଥନା କରୁଛି । ଏହି ନାଇଟ ଧର୍ମଯୁଦ୍ଧରେ ତାର କର୍ତ୍ତବ୍ୟ କରି ଆସିଛି, ଶତ୍ରୁ ସହିତ ଆପଣଙ୍କ ପାଇଁ ଯୁଦ୍ଧ କରି ଆସିଛି । ସେ ଯେ କର୍ତ୍ତବ୍ୟରେ ତ୍ରୁଟି କଲା, ତାର କାରଣ ହେଉଛି ମୁଁ ଓ ରାଣୀ । ମୋତେ ପରିହାସ କରିବାକୁ ଯାଇ ରାଣୀ ମୋ ନାମରେ କେନେଥଙ୍କୁ ଡକାଇ ଆଣିଲେ ଓ ସେହି ଅଳ୍ପ ସମୟ ମଧ୍ୟରେ ପତାକା ଚୋରି ହୋଇଗଲା । ଏ କ୍ଷେତ୍ରରେ ଯେ କୌଣସି ନାଇଟ ତାହାହିଁ କରି-ଥାନ୍ତା । ତାଙ୍କର ଅପରାଧ କଅଣ ?”

ରାଜା ଗମ୍ଭୀର ହୋଇ ପଚାରିଲେ, “ତୁମେ କେଉଁଠି ତା ସଙ୍ଗେ ଦେଖାକଲ ?”

ଉତ୍ତର ମିଳିଲା, “ମହାରାଣୀଙ୍କ ତମ୍ବୁରେ ।”

ରାଜା କ୍ରୁଦ୍ଧ ସ୍ୱରରେ କହିଲେ, “ ହାୟ ସେଣ୍ଟ ଜର୍ଜ, ଏହା ଶୁଣିବାକୁ ହେଲା । ଏଡ଼ଥ, ଏହି କ୍ଷଣିକ ଅପରାଧ ପାଇଁ ତୁମକୁ ଚିର ଜୀବନ ପୃଥିବୀଠାରୁ, ସମାଜଠାରୁ ଦୂରରେ ଲୋକ ଚକ୍ଷୁର ଅନ୍ତରାଳରେ କଟାଇବାକୁ ହେବ ।”

ଏଡ଼ଥ ଭାଇଙ୍କର କ୍ରୋଧରେ ଭୟ କରିଗଲେ । ଅତି ନମ୍ର ସ୍ୱରରେ ସେ କହିଲେ, “ଭାଇ, ମୋ ର ଚରିତ୍ର ନିଷ୍କଳଙ୍କ । ସ୍ୱୟଂ ରାଣୀ ଏହାର ସାକ୍ଷ୍ୟ । କିନ୍ତୁ ମୁଁ ନିଜର ଦୋଷ ପାଇଁ କ୍ଷମା ମାଗୁନାହିଁ କିମ୍ବା ଅନ୍ୟକୁ ଦୋଷୀ କରିବାକୁ ଯାଉନାହିଁ । ମୁଁ କେବଳ ତୁମର ଦୟା ଭିକ୍ଷା କରୁଛି । ଦିନେ ତୁମକୁ ଈଶ୍ୱରଙ୍କ ନିକଟରେ ଯେଉଁ

ଦଣ୍ଡ ଭିକ୍ଷା କରିବାକୁ ହେବ, ସେହି ଦଣ୍ଡାରୁ ଟିକିଏ ହେଉଛି ମୋର ପ୍ରାର୍ଥନା ।"

ରିଗୃଙ୍କ କ୍ରୋଧ ଏଥିରେ ଶାନ୍ତ ନ ହୋଇ ବରଂ ଉଦ୍ଦୀପ୍ତ ହୋଇ ଉଠିଲା । ତାଙ୍କର ଅଧର ଯୁଗଳ କମ୍ପିତ ହୋଇ ଆସିଲା । ସେ କହିଲେ, "ତୁମେ କଅଣ ମୋର କୁଳରେ, ପ୍ଲାଣ୍ଟାଜେନେଟ ପରିବାରରେ ଜନ୍ମ ହୋଇଛ ? ତୁମର ଟିକିଏ ହେଲେ ଲଜ୍ଜା ନାହିଁ ? ପ୍ରେମରେ ପାଗଳ ହୋଇ ଏପରି ପ୍ରଳାପ କରନାହିଁ । ମୋର ଧୈର୍ଯ୍ୟର ସୀମା ଅଛି । ମୁଁ ଆଦେଶ ଦେବି, ସେ ନାଇଟର ମୁଣ୍ଡଟା ତୁମ ପାଖକୁ ପଠାଯିବ ।"

ଏଡିଥ ଶାନ୍ତ ସ୍ୱରରେ କହିଲେ, "ତୁମେ ରାଜା—ତା କରିବାକୁ ତୁମର କ୍ଷମତା ଅଛି । ତୁମେ ଯେପରି ଜଣକର ମୁଣ୍ଡ କାଟିପାର, ମୁଁ ମଧ୍ୟ ସେହିପରି ସେହି କଟା ମୁଣ୍ଡକୁ ସ୍ମୃତି-ପେଟିକାରେ ସାଇତି ରଖି ଜୀବନଯାକ ଅଶ୍ରୁ ଢାଳୁଥିବି । ରାଜନୈତିକ ସୁବିଧା ପାଇଁ ଯଦି କାହାରିକୁ ବିବାହ କରିବାପାଇଁ ମୋତେ କୁହାଯାଏ, ମୁଁ ସେକଥା ଶୁଣିବି ନାହିଁ । ଯିଏ ତାହା କହିବ ସେ ମୋର ପରମ ଶତ୍ରୁ । ସାର୍ କେନେଥ ବଞ୍ଚି ରହିଲେ ଯେ ମୁଁ ତାଙ୍କୁ ବିବାହ କରିପାରନ୍ତି ତାହା ଅସମ୍ଭବ, କାରଣ ସମାଜରେ ଆମ ଦୁହିଁଙ୍କ ସ୍ଥାନ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । କିନ୍ତୁ ମୃତ୍ୟୁ ନିକଟରେ ଉଚ୍ଚ ନୀଚର ଭେଦ ନାହିଁ । ତା ନିକଟରେ ସମସ୍ତେ ସମାନ । ମୃତ୍ୟୁରେ ଆମ ଦୁହିଁଙ୍କ ମିଳନ କେହି ବନ୍ଦ କରିପାରିବ ନାହିଁ ।"

ରାଜାଙ୍କ ମୁଖରେ ବିରକ୍ତିର ଚିହ୍ନ । ଏହି ସମୟରେ ଜଣେ ଧର୍ମଯାଜକ ରାଜାଙ୍କ ତମ୍ବୁରେ ପ୍ରବେଶ କରିବାରୁ ରାଣୀ ଓ ଏଡିଥ ନିର୍ବାଣ ହୋଇ ତମ୍ବୁରୁ ବାହାରିଗଲେ ।

ବୃଦ୍ଧ ଧର୍ମଯାଜକ ଜାନୁପାତ କରି କେନେଥଙ୍କୁ କ୍ଷମା ଦେବାପାଇଁ ରାଜାଙ୍କୁ ପ୍ରାର୍ଥନା କଲେ ।

ରାଜା ବିରକ୍ତ ହୋଇ କହିଲେ, "ଏ କଅଣ ? ପଦେ ପଦେ ପ୍ରତିବନ୍ଧକ । ଅନ୍ତଃପୁରର ମହିଳାମାନେ ଆସିଲେ ସେ ସଇତାନର ଜୀବନ ରକ୍ଷା ପାଇଁ । ପୁଣି ଜଣେ ସାଧୁପୁରୁଷ ଧର୍ମଯାଜକ ଠିକ୍ ସେହି ଅନୁରୋଧ ଘେନି ଆସିଛନ୍ତି । ଆଶ୍ଚର୍ଯ୍ୟର କଥା, ଏତେ-ବେଳଯାଏ ଲୋକଟାର ମୁଣ୍ଡ କଟା ହୋଇନାହିଁ ?"

ଧର୍ମଯାଜକ ଉତ୍ତର କଲେ, "ଉଦ୍‌କ୍‌ସ ତାର ମୁଣ୍ଡ କାଟି ପାଇଁ ବଧ ଭୂମିକୁ ନେଉଥିଲେ । ମୁଁ ତାଙ୍କୁ ଅପେକ୍ଷା କରିବାକୁ କହି ତୁମ ପାଖକୁ ଆସିଛି ।"

ରାଜା ଟିକିଏ ଶାନ୍ତ ହୋଇ କହିଲେ, "ଅଚ୍ଛା, ଆପଣ କଅଣ କହିବାକୁ ଚାହାନ୍ତି ?"

ଧର୍ମଯାଜକ ଉତ୍ତର କଲେ, "ତୁମେ ରାଜା; ମୋର ଯାହା କହିବାର ଅଛି ଆଗେ ଶୁଣି ଯାହା କରିବାର କରିବ । କେନେଥଙ୍କ ଠାରୁ ବର୍ତ୍ତମାନ ଏପରି ଗୁପ୍ତ କଥା ଶୁଣିପାରିଛି, ଯହିଁରୁ ମୁଁ ନିଃସନ୍ଦେହ ରୂପେ କହିପାରେ ଯେ ତାକୁ ମୃତ୍ୟୁ ଦଣ୍ଡ ଦେବା ଘୋର ଅନ୍ୟାୟ ହେବ । ତାକୁ ହତ୍ୟା କଲେ ସାରା ଜୀବନ ତୁମକୁ ଅନୁତାପାନଳରେ ଦଗ୍ଧ ହେବାକୁ ପଡ଼ିବ । ସେ ଗୁପ୍ତ କଥାଟି ତୁମ ଆଗରେ ପ୍ରକାଶ କରିବାକୁ ମୁଁ ଅକ୍ଷମ; କାରଣ କୌଣସି ଧର୍ମଯାଜକ ତାର ଶିଷ୍ୟର ଗୁପ୍ତ କଥା ପ୍ରକାଶ କରିବା ନିଷିଦ୍ଧ । ମୁଁ ହେଉଛି ଖ୍ରୀଷ୍ଟିଆନ ଧର୍ମଯାଜକ, ଏନ୍‌ଗାଜୀର ସନ୍ନ୍ୟାସୀ । ସଂସାର ସହିତ ମୋର ସମ୍ପର୍କ ପ୍ରାୟ ନାହିଁ, କିନ୍ତୁ ମୁଁ ଧର୍ମ ନୀତି ମାନି ଚଲେ । ମୁଁ ମିଥ୍ୟା କହି ପାରିବି ନାହିଁ କି ଶିଷ୍ୟର ଗୁପ୍ତ କଥା ତୁମ ଆଗରେ ପ୍ରକାଶ କରିପାରିବି ନାହିଁ ।"

ରାଜା ଟିକିଏ ବିସ୍ମୟ ପ୍ରକାଶ କରି କହିଲେ, "ତାହାହେଲେ ଆପଣ ହେଉଛନ୍ତି ଏନଗାଜ୍ଜର ସେହି ସନ୍ନ୍ୟାସୀ ଥିଓଡରିକ । କ୍ଷମା କରିବେ; ଆପଣ ଧର୍ମ ନୀତି ଲଙ୍ଘନ କରି ଗୁପ୍ତ କଥା ପ୍ରକାଶ କରି ପାରିବେ ନାହିଁ, ମୁଁ ମଧ୍ୟ ରାଜଧର୍ମ ଲଙ୍ଘନ କରି ପାରିବି ନାହିଁ । ବିଶ୍ୱାସଘାତକ କର୍ତ୍ତବ୍ୟଭ୍ରଷ୍ଟ ସୈନିକର ଦଣ୍ଡ ହେଉଛି ମୃତ୍ୟୁ । କେନେଥକୁ ସେହି ଦଣ୍ଡ ଭୋଗିବାକୁ ହେବ ।"

ଥିଓଡରିକ ଏଥିରେ ବିଚଳିତ ନ ହୋଇ କେବଳ କହିଲେ, "ରାଜା, ରାଜଧର୍ମର ଯେତେ ଲଙ୍ଘନ ହେଲେ ସୁଦ୍ଧା ସେହି ନାଇଟର ଜୀବନ ରକ୍ଷା କରିବା ତୁମର ଉଚିତ । ନଚେତ ପରେ ସେଥିପାଇଁ ଅନୁତାପ କରିବାକୁ ପଡ଼ିବ । ସାବଧାନ ! ସାବଧାନ !"

ରିଚାର୍ଡ କହିଲେ, "ଆପଣ ବିଦାୟ ନିଅନ୍ତୁ । ଓଃ, ସୂର୍ଯ୍ୟ ଉଦିତ ହେଲେଣି । ଏତେ ବେଳ ଯାଏ ମୋ ପତାକା ପ୍ରତି ଅପମାନର ପ୍ରତିଶୋଧ ନିଆଗଲା ନାହିଁ । ସେଣ୍ଟ ଜର୍ଜଙ୍କ ନାମରେ ମୁଁ ଶପଥ କରୁଛି......"

ହଠାତ ଶୁଣାଗଲା, "ଶପଥ କରନ୍ତୁ ନାହିଁ । ଶପଥ କରିବାକୁ ସବୁ ଧର୍ମଶାସ୍ତ୍ରରେ ନିଷେଧ କରାଯାଇଛି ।"

ରାଜା ଦେଖିଲେ, ତାଙ୍କ ଆଗରେ ମୁସଲମାନ ହକିମ୍ । ରାଜା ହକିମ୍‌ଙ୍କୁ ସ୍ୱାଗତ ଜଣାଇ କହିଲେ, "ହକିମ୍ ମହାଶୟ, ଆପଣ ମୋର ଯେଉଁ ଉପକାର କରିଛନ୍ତି, ତାର ପ୍ରତିଦାନରେ ମୁଁ କଅଣ ଦେଇପାରେ ?"

ହକିମ୍—ମୋତେ ଆପଣ ଅର୍ଥ ଯାଚିଥିଲେ । ମୁଁ ତାହା ଗ୍ରହଣ କରିନଥିଲି । କିନ୍ତୁ ମୁଁ ସ୍ମରଣ କରାଇ ଦେବାକୁ ଚାହେଁ, ଆପଣ ଗୋଟିଏ ଜୀବନ ରକ୍ଷା କରି ପାରିଲେ ଭଗବାନ ତାକୁ ଆପଣଙ୍କର

ପ୍ରତିଦାନ ବୋଲି ଗ୍ରହଣ କରିବେ । ମୋର ଅନୁରୋଧ, ସେହି ନାଇଟ୍‌ର ଜୀବନ ରକ୍ଷା କରନ୍ତୁ ।"

ରାଜା ଅଧୀର ଭାବରେ ତମ୍ବୁ ମଧ୍ୟରେ ପଦଚାରଣ କରୁ କରୁ କହିଲେ, "ହକିମ୍ ମହାଶୟ ଆସିବାବେଳୁ ମୁଁ ତାଙ୍କ ଉଦ୍ଦେଶ୍ୟ ଠିକ୍ ଅନୁମାନ କରିପାରିଥିଲି । ମୁଁ ରାଜା, ଏ ବିରାଟ ସେନା ବାହିନୀର ସର୍ବାଧିନାୟକ । କର୍ତ୍ତବ୍ୟଭ୍ରଷ୍ଟ ଜଣେ ସୈନିକକୁ ପ୍ରାଣଦଣ୍ଡ ଦେବା କିଅଣ ଅନ୍ୟାୟ ? ମୋର କିଅଣ ଏତିକ କ୍ଷମତା ନାହିଁ ? ହାଃ ହାଃ—ଏଥିରେ ହସ ମାଡ଼ିବାର କଥା ।"

ରାଜାଙ୍କର କ୍ରୋଧାଗ୍ନି ଯେ ବହୁପରିମାଣରେ ପ୍ରଶମିତ ହୋଇ ଯାଇଥିଲା, ତାହା ତାଙ୍କ କଥାରୁ ଜଣାପଡ଼ୁଥିଲା । ଏହା ଜାଣିପାରି ହକିମ୍ କହିଲେ, "ଏକ ସମୟରେ ମୃତ୍ୟୁଦଣ୍ଡର ଆଦେଶ ସଙ୍ଗେ ହାସ୍ୟ ବାହାରେ ନାହିଁ । ଆପଣ ରାଜା । ରାଜାର କର୍ତ୍ତବ୍ୟ କେବଳ ନ୍ୟାୟ ବିଚାର ନୁହେଁ, କୃପା ପ୍ରଦର୍ଶନ ମଧ୍ୟ ତାର କର୍ତ୍ତବ୍ୟ । ଏହି ଗୋଟିକ ଜୀବନ ଉପରେ ଅନେକଙ୍କର ଜୀବନ ନିର୍ଭର କରୁଛି । ତେଣୁ ତାକୁ କ୍ଷମା ଦିଅନ୍ତୁ ।"

ରିଚାର୍ଡ଼—ଆପଣଙ୍କ କଥାର ମର୍ମ ବୁଝିପାରୁ ନାହିଁ । ବିଶଦ କରି ବୁଝାଇ ଦିଅନ୍ତୁ ।

ହକିମ୍—ଯେଉଁ ଔଷଧ ବଳରେ ମୁଁ ଆପଣଙ୍କର ଓ ଅନ୍ୟ ଅନେକଙ୍କର ଜୀବନ ରକ୍ଷା କରି ପାରିଛି, ତାହା ହେଉଛି ଗୋଟିଏ ତାବିଜ । ସେଥିରେ କେତେକ ବହୁମୂଲ୍ୟ ବନ୍ୟ ଔଷଧ ଅଛି । ମୁଁ କେବଳ ତାକୁ ପାଣିରେ ବୁଡ଼ାଇ ଦିଏ ଓ ଯଥା ସମୟରେ ରୋଗୀକୁ ସେହି ପାଣି ପିଇବାକୁ ଦିଏ । କିନ୍ତୁ ଯେଉଁମାନେ ଏ ପ୍ରକାର ଚିକିତ୍ସା କରନ୍ତି ସେମାନଙ୍କୁ କେତେକ କଠୋର ବ୍ରତ ପାଳିବାକୁ ହୁଏ । ସେମାନେ ନିର୍ଦ୍ଦିଷ୍ଟ କେତେକ ଦିନ ଉପବାସ ରହି ଈଶ୍ୱରଙ୍କ

ପ୍ରାର୍ଥନା କରୁଥାନ୍ତି । ପ୍ରତି ମାସରେ ଅନ୍ତତଃ ବାର ଜଣଙ୍କର ଶଲ୍ୟକ୍ରିୟା କରିବାକୁ ହେବ । ତା କରି ନପାରିଲେ ତାବିଜର ଅଲୌକିକ ଶକ୍ତି ରହିବ ନାହିଁ । କେବଳ ସେତିକି ନୁହେଁ, ବର୍ଷକ ମଧ୍ୟରେ ଶଲ୍ୟକ୍ରିୟାକରିଲେ ମୃତ୍ୟୁ ଘଟିବ । ଆଉ ଗୋଟିଏ ଜୀବନ ରକ୍ଷା କରିପାରିଲେ ମୋର ଏ ମାସର ସଂଖ୍ୟା ପୂରଣ ହୋଇଯିବ ।"

ରାଜା ବାଧା ଦେଇ କହିଲେ, "ବେଶ୍, ଆପଣଙ୍କ ସଂଖ୍ୟା ପୂରଣ କରିବାକୁ ଦୂରକୁ ଯିବାକୁ ପଡ଼ିବ ନାହିଁ । ଏହି ଶିବିରରେ ଅନେକ ରୋଗୀ ଅଛନ୍ତି । ଆପଣ ସେମାନଙ୍କୁ ଶଲ୍ୟକ୍ରିୟା କରିପାରନ୍ତି ।"

ହକିମ୍—ଆପଣ ଯୁକ୍ତି କରିପାରନ୍ତି; କିନ୍ତୁ ସବୁ କ୍ଷେତ୍ରରେ ଯୁକ୍ତି ଚଳେ ନାହିଁ । ଶୀତଳ ପାଣି ଗ୍ଲାସେ ପିଇବାଦ୍ୱାରା ଆପଣଙ୍କ ରୋଗ ଦୂର ହେଲା । କାହିଁକି ? ଏଠାରେ ଯୁକ୍ତିର ସ୍ଥାନ ନାହିଁ । ଅଜି ମୁଁ ଗୋଟିଏ ହୀନ କୁକୁରର ଶଲ୍ୟକ୍ରିୟା କରିଛି; ତେଣୁ କୌଣସି ମନୁଷ୍ୟକୁ ସ୍ପର୍ଶ କରିବି ନାହିଁ । ଏଇ ଜଣକର ଜୀବନ ରକ୍ଷା କଲେ ଆପଣ ଓ ମୁଁ ଉଭୟେ ମହା ବିପଦରୁ ରକ୍ଷା ପାଇବା । ମୁଁ ଗୋଟିଏ କଥା କହିପାରେ—ଆପଣ ସହସ୍ର ପ୍ରାଣୀଙ୍କର ଜୀବନ ନେଇପାରନ୍ତି, କିନ୍ତୁ ଗୋଟିକୁ ସୁଦ୍ଧା ଜୀବନ ଦେବାର ଶକ୍ତି ଅଛି କି ? ଏକଥା ଭୁଲି ଯାଆନ୍ତୁ ନାହିଁ ।

ରାଜା ବିରକ୍ତ ହୋଇଉଠିଲେ । ହକିମ୍ ମହାଶୟ କହିଲେ, "ମୋର ଆଉ କିଛି କହିବାକୁ ନାହିଁ । କେବଳ ଏତିକି କହିପାରେ —ଆପଣଙ୍କର ମନ ସଂକୀର୍ଣ୍ଣ, କୃତଜ୍ଞତା କଅଣ ଜାଣନ୍ତି ନାହିଁ ।"

ରିଚାର୍ଡ଼ ଏଥି ପୂର୍ବରୁ ହକିମ୍ଙ୍କୁ କୌଣସି ପୁରସ୍କାର ଗ୍ରହଣ କରିବାକୁ ସମ୍ମତ କରାଇ ପାରି ନ ଥିଲେ । ବର୍ତ୍ତମାନ ସେ ସ୍ୱତଃ ଗୋଟାଏ ପ୍ରାର୍ଥନା କରିଛନ୍ତି । ତାହା ପ୍ରତ୍ୟାଖ୍ୟାନ କରିବା ବାସ୍ତବରେ କୃତଘ୍ନତା ହେବ ବୋଲି ରାଜା ମନେକଲେ । ତେଣୁ

ସେ କେନେଥଙ୍କର ପ୍ରାଣଦଣ୍ଡାଦେଶ ପ୍ରତ୍ୟାହାର କରନେଲେ । କିନ୍ତୁ ତା ସଙ୍ଗେ ସଙ୍ଗେ ଆଦେଶ ଦେଲେ, "ମୋର ଶିବିରରେ ତା ଭଳି କର୍ତ୍ତବ୍ୟଭ୍ରଷ୍ଟ ଦାୟିତ୍ୱଶୂନ୍ୟ ସୈନିକର ସ୍ଥାନ ନାହିଁ । ଏ ବିଶ୍ୱାସଘାତକକୁ ଆପଣ ସଙ୍ଗରେ ନେଇଯାନ୍ତୁ ।"

ହକିମ୍ ସେହି ଦିନ କେନେଥଙ୍କୁ ସଙ୍ଗରେ ଘେନି ସାଲାଦିନଙ୍କ ଦରବାରକୁ ଫେରିଗଲେ । ରିଚାର୍ଡ ସାଲାଦିନଙ୍କୁ ଧନ୍ୟବାଦ ଦେଇ ଖଣ୍ଡିଏ ପତ୍ର ହକିମ୍‌ଙ୍କ ହାତରେ ଦେଲେ ।

ଏହି ସମୟରେ ଅଷ୍ଟ୍ରିଆର ଡିଉକ ଲିଓପୋଲଡ଼ଙ୍କ କଥା ମନେପଡ଼ିବାରୁ ରାଜା ଭିକ୍‌ସଙ୍କୁ ଡକାଇପଠାଇଲେ ।

## ଚାର : ମନ୍ତ୍ରଣା

ଉଭିକ୍‌ସ ଓ ତାଙ୍କ ପଛେ ପଛେ ସନ୍ନ୍ୟାସୀ ଥିଓଡରିକ ଋଗୃର୍ଡଙ୍କ ତମ୍ବୁରେ ପ୍ରବେଶ କରିବା ମାତ୍ରେ ରାଜା ଉଭିକ୍‌ସଙ୍କୁ ଆଦେଶ ଦେଲେ—ଯାଅ, ଅଷ୍ଟ୍ରିଅର ଓଡ଼ିକଙ୍କୁ ଡାକି ଆଣି ପତାକା ଚୋରିର କାରଣ ପଚାର । ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ତାଙ୍କୁ ଆହ୍ୱାନ କର ।

ଉଭିକ୍‌ସ କହିଲେ, "ସେ ଯଦି ପତାକା ଚୋରି କରି ନ ଥିବେ ?"

ଏହି ସମୟରେ ଏନ୍‌ଗାଲର ସନ୍ନ୍ୟାସୀ ରାଜାଙ୍କୁ କହିଲେ, "ଦୁଇଜଣ ଖ୍ରୀଷ୍ଟିଆନ ରାଜାଙ୍କ ମଧ୍ୟରେ କଳହ ଓ ଦ୍ୱନ୍ଦ୍ୱଯୁଦ୍ଧ ବନ୍ଦ କର । ରାଜା ଋଗୃର୍ଡ଼, ତୁମ ଭାଗ୍ୟରେ ବିପଦ ଓ ମରଣ ଘଟିବ ।"

ଋଗୃର୍ଡ଼ ବିଚଳିତ ନ ହୋଇ କହିଲେ, "ମୁଁ ସେଥିପାଇଁ କାତର ନୁହେଁ । ବିପଦ, ମୃତ୍ୟୁ—ସେ ତ ମୋର କ୍ରୀଡ଼ାସାମଗ୍ରୀ । ତୁମେ ସନ୍ନ୍ୟାସୀ, ଧର୍ମଯାଜକ । ନିଜର ସୀମା ମଧ୍ୟରେ ରହ । ମୋର ବିବେକ ଉପରେ ତୁମର ଯିନା ଅଧିକାର ଅଛି; କିନ୍ତୁ ମୋର ମାନସମ୍ମାନ ମୋ ନିଜ ହାତରେ । ସେଥିପାଇଁ ଯାହା କିଛି କରିବାକୁ ମୁଁ ପ୍ରସ୍ତୁତ ।"

ଥିଓଡରିକ ଉତ୍ତର କଲେ, "ମହାରାଜ, ମୁଁ ଗ୍ରହ ନକ୍ଷତ୍ରର ଗତି ଦେଖି ମନୁଷ୍ୟର ଭବିଷ୍ୟତ ଜାଣିପାରେ । ଏହାଠାରେ ଖୁବ୍ ନିକଟରେ ତୁମର ଜଣେ ଶତ୍ରୁ ରହିଛି । ତୁମେ ନିଜର ଗର୍ବ ପରିହାର ନକଲେ ସେ ତୁମର ସର୍ବନାଶ କରିବ ।"

ବର୍ଗୁଡ଼ି—ଜ୍ଞାନୀ ଲୋକେ ଜ୍ୟୋତିଷରେ ବିଶ୍ୱାସ କରନ୍ତି ନାହିଁ । ସେ ଯାହାହେଉ, ମୁଁ ମଧ୍ୟ ଖ୍ରୀଷ୍ଟିଆନ ରାଜାମାନଙ୍କ ମଧ୍ୟରେ ଏକତା ନଷ୍ଟ ହେବା ଇଚ୍ଛା କରେ ନାହିଁ । କିନ୍ତୁ ମୋତେ ଯେଉଁ ଅପମାନ ହୋଇଛି ତାର କଣ ପ୍ରତିକାର ?

ସନ୍ୟାସୀ—ରାଜନୀୟମଣ୍ଡଳୀ ପରିଷଦ ମୋତେ କହିଛନ୍ତି, ସେମାନେ ସମ୍ଭବ ହେଲେ ତୁମର ଦାବୀ ଗ୍ରହଣ କରିନେବେ । ସେଣ୍ଟ ଜର୍ଜ ପାହାଡ଼ ଉପରେ ପୁଣି ଇଂଲଣ୍ଡର ପତାକା ଉଡ଼ିବାରେ ସେମାନଙ୍କର କାହାରି ଆପତ୍ତି ନାହିଁ । ପତାକା ଚୋରକୁ ଯିଏ ଧରିଦେବ ତାକୁ ଯଥେଷ୍ଟ ପୁରସ୍କାର ଦିଆଯିବ । ରାଜା ରିଚ୍ଛାର୍ଡ଼, ମୁଁ ସାବଧାନ କରିଦେଉଛି, ଗର୍ବ ପରିହାର କର । ମନେରଖ, ମୁଁ ମଧ୍ୟ ଦିନେ ଜଣେ ନାଇଟ ଥିଲି; କିନ୍ତୁ ତୁମରିପରି ଗର୍ବ କରୁଥିବାରୁ ଆଜି ମୋର ଏ ଅବସ୍ଥା । ବିରାଟ ମରୁଭୂମିରେ ନିର୍ଜନ ଆଶ୍ରମରେ ରହିଛି; ଗତ ଅନ୍ୟାୟ ଲାଗି ଅନୁତାପରେ ଦିନ କାଟୁଛି । ଗର୍ବ ଛାଡ଼ି ଧୀରସ୍ଥିର ଭାବରେ କାର୍ଯ୍ୟ ନକଲେ ହୁଏତ ତୁମର ଅବସ୍ଥା ମୋ ଅପେକ୍ଷା ଅଧିକ ଖରାପ ହେବ । ତୁମେ ଇଂଲଣ୍ଡର ସିଂହ ବୋଲି ସମସ୍ତେ କହନ୍ତି । ସିଂହର ହିଂସ୍ରତା, କ୍ରୂରତା ସଙ୍ଗେ ତାର ବଳବିକ୍ରମ ଦେଖାଅ । ମୁଁ ବିଦାୟ ନେଉଛି । ମୋର ଶେଷ ଅନୁରୋଧ—ସାବଧାନ ଥାଅ । ମୃତ୍ୟୁ ତୁମ ନିକଟରେ ରହିଛି ।”

ଏହା କହି ସନ୍ୟାସୀ ହଠାତ୍ ଚାଲିଗଲେ ।

ସନ୍ୟାସୀଙ୍କୁ ନିରାପଦରେ ଛାଡ଼ିଦେବାପାଇଁ ଡିଭିଲ୍ସଙ୍କୁ ଆଦେଶ ଦେଇ ରାଜା ମନେ ମନେ କହିଲେ—ପାଗଳ, ପାଗଳ ସନ୍ୟାସୀ-ପାଗଳ ବୃଦ୍ଧ !

ଅଳ୍ପ ସମୟ ପରେ ଡଭ୍‌କ୍‌ସ ଫେରିଆସି ରାଜାଙ୍କୁ ଜଣାଇଲେ ଯେ ସନ୍ନ୍ୟାସୀ ସୈନିକମାନଙ୍କୁ ଧର୍ମ ଉପଦେଶ ଦେଇ ଧର୍ମ ନିମନ୍ତେ ପ୍ରାଣପଣେ ଯୁଦ୍ଧ କରିବାକୁ କହୁଅଛନ୍ତି ।

ଏହି ସମୟରେ ଟାୟାରର ବିଶପ ଅସି ରାଜାଙ୍କୁ ସମ୍ବାଦ ଦେଲେ—ସାଲାଦିନ ଏକ ବିରାଟ ଯୁଦ୍ଧ ପାଇଁ ତାଙ୍କର ସମସ୍ତ ସୈନ୍ୟଙ୍କୁ ଏକତ୍ରିତ କରୁଅଛନ୍ତି । ଏହା ଜାଣିପାରି ରାଜାମାନେ ଆଉ ଧର୍ମଯୁଦ୍ଧ ଚଳାଇବେ ନାହିଁ ବୋଲି ସ୍ଥିର କରିଅଛନ୍ତି । ବର୍ତ୍ତମାନ କେବଳ ଇଂଲଣ୍ଡର ରାଜା ତାଙ୍କର ମୁଷ୍ଟିମେୟ ଇଂରେଜ ସୈନ୍ୟ ନେଇ ବିଶାଳ ମୁସଲମାନ ବାହିନୀର ସମ୍ମୁଖୀନ ହୋଇ-ପାରନ୍ତି । ମନସେରାଟର ମାର୍କୁଇସ ଓ ଟେମ୍ପଲରମାନଙ୍କ ଗ୍ରାଣ୍ଡମାଷ୍ଟର ତାଙ୍କୁ ସାହାଯ୍ୟ କରିବାର ଆଶା କରାଯାଏ; ସେ ସାହାଯ୍ୟ ମଧ୍ୟ ନିର୍ଭରଯୋଗ୍ୟ ନୁହେଁ ।

ରାଜା ରିଚାର୍ଡ଼ ବିଶପଙ୍କ କଥାର ସତ୍ୟତା ବୁଝିପାରିଲେ । ସେ କ୍ରୋଧ ତ୍ୟାଗ କରି ଧୀର ଭାବରେ ଚିନ୍ତା କରିବାକୁ ଲାଗିଲେ । ବାସ୍ତବରେ ସେ ଏକାକୀ । ଅନ୍ୟାନ୍ୟ ରାଜାମାନଙ୍କ ସାହାଯ୍ୟ ବିନା ଧର୍ମଯୁଦ୍ଧରେ ଜୟର ଆଶା ଆଦୌ ନାହିଁ । ରିଚାର୍ଡ଼ଙ୍କ ଗର୍ବହିଁ ଏସବୁର ମୂଳରେ, ଏହା ବିଶପ ବୁଝାଇ ଦେଲେ ।

ରିଚାର୍ଡ଼ କହିଲେ, "ବିଶପ ମହାଶୟ, ମୁଁ ସ୍ୱୀକାର କରୁଛି, ଦୋଷ ମୋର । କିନ୍ତୁ ଏ ପର୍ଯ୍ୟନ୍ତ ଆମେ ଯେଉଁ ଜୟ ଲାଭ କରି ଆସିଛୁ ସେ ଆମର ଆଖି ଆଗରେ ଉଭେଇଯିବ, ଏହା କିପରି ସହିପାରିବି ? ମୁଁ ତା ହେବାକୁ ଦେବି ନାହିଁ । ମୁଁ ନିଶ୍ଚୟ ଜେରୁଜେଲମର ଗ୍ଲାଡ ଉପରେ ଯୀଶୁଙ୍କର ବିଜୟ ପତାକା ଉଡ଼ାଇବି ।"

ବିଶପ—"ତୁମେ ତା କରିପାରିବ । କିନ୍ତୁ ସେଥିପାଇଁ ଅଧିକ ବିନ୍ଦୁମାତ୍ର ରକ୍ତପାତ ଆବଶ୍ୟକ ହେବ ନାହିଁ । ସାଲାଦିନ ତୁମର

ୀବନ୍ତର ଉପଯୁକ୍ତ ସନ୍ତାନ କରନ୍ତୁ ଓ କରିବେ । ପବିତ୍ର ଜେରୁଜେଲମ ତୀର୍ଥ ତାଙ୍କ ଆଦେଶରେ ସମସ୍ତ ଖ୍ରୀଷ୍ଟିଆନ ଜଗତପାଇଁ ପୁଣି ଉନ୍ମୁକ୍ତ ରହିବ; ଅଜି ତୁମର ଉପାଧି ହେବ 'ଜେରୁଜେଲମର ରାଜା ଓ ରକ୍ଷକ' ।"

ରିଗୃର୍ଡ—ମୁଁ, ମୁଁ ହେବି ଜେରୁଜେଲମର ରକ୍ଷକ । ଯୁଦ୍ଧରେ ବିଜୟ ଲାଭ କରି ମୁଁ ଏହାଠାରୁ କଅଣ ଅଧିକ ଆଶା କରନ୍ତି ?

ବିଶପ—ସାଲାଦିନ ବୈବାହିକ ସମ୍ବନ୍ଧବଳରେ ଜେରୁଜେଲମର ରାଜପଦରେ ରିଗୃର୍ଡଙ୍କର ସମଭାଗୀ ହେବେ ।

ଏତିକି ଶୁଣିଲା ମାତ୍ରେ ରିଗୃର୍ଡ ଗମ୍ଭୀର ବିସ୍ମୟ ପ୍ରକାଶ କରି କହିଲେ, "ବୈବାହିକ ସମ୍ବନ୍ଧ ! କାହାର ? କାହା ସହିତ ?"

ବିଶପ—ହଁ, ଏଡିଥଙ୍କ ସହିତ ସାଲାଦିନଙ୍କର ବିବାହ । ଥିଓଡରିକ ପବିତ୍ର ଜେରୁଜେଲମରେ ଶାନ୍ତିର ପ୍ରତିଷ୍ଠା ପାଇଁ ଲାଗିଅଛନ୍ତି । ସେ ଏହି ବିବାହର ସୂଚନା ଦେଇଥିବେ ।

ରାଜାଙ୍କ ଚକ୍ଷୁରୁ ଅଗ୍ନିକଣା ବାହାରିଲା ପରି ବୋଧ ହେଲା । ଗୁରୁଗମ୍ଭୀର ସ୍ୱରରେ ସେ କହିଲେ—ମୋର ଭଉଣୀ ଏଡିଥର ମୁସଲମାନ ସଙ୍ଗେ ବିବାହ ?

ରାଜାଙ୍କର କ୍ରୋଧ ଶାନ୍ତ କରିବା ଉଦ୍ଦେଶ୍ୟରେ ବିଶପ କହିଲେ, "ସେଥିପାଇଁ ଅବଶ୍ୟ ପ୍ରଥମେ ତୁମର ଓ ଧର୍ମଗୁରୁ ପୋପଙ୍କର ଅନୁମତି ଦରକାର ।"

ରାଜା—ମୋ ଭଉଣୀର ସାଲାଦିନଙ୍କ ସଙ୍ଗେ ବିବାହ ? ବେଶ୍, ବେଶ୍, କହିଯାଅ । ଶୁଣିବାକୁ ମୋର ଧୈର୍ଯ୍ୟର ଅଭାବ ନାହିଁ ।

ରାଜା ଧୀର ଭାବରେ ଶୁଣିବାକୁ ପ୍ରସ୍ତୁତ ଥିବାର ଦେଖି ବିଶପ ଟିକିଏ ବିସ୍ମିତ ଓ ଆଶ୍ୱସ୍ତ ହେଲେ । ସେ କହିବାକୁ

ଲାଗିଲେ, "ଖ୍ରୀଷ୍ଟିଆନ ଓ ମୁସଲମାନ ମଧ୍ୟରେ ବୈବାହିକ ସମ୍ବନ୍ଧ ନୂଆ କଥା ନୁହେଁ । ଏପରି ଅନେକ ବିବାହ ହୋଇ ଯାଇଛି । ଆଜି ବଡ଼ କଥା ହେଉଛି, ସାଲାଦିନ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିବେ ।"

ରିଗୃର୍ଡ୍ଙ୍କ ମୁଖରେ ସନ୍ଦେହର ଛାୟା । ସେ ବିଶପଙ୍କୁ କହିଲେ, "ଏ ପ୍ରସ୍ତାବରେ ମୁଁ ପ୍ରଥମେ ନିତାନ୍ତ ବିରକ୍ତ ହୋଇଥିଲି; କିନ୍ତୁ ଦେଖୁଛି ସାଲାଦିନଙ୍କ ଭଳି ସାହସୀ, ଉଦାର ବୀରଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ କରିଯାଇ ପାରିଲେ ଲାଭ ଛଡ଼ା କ୍ଷତି ନାହିଁ । ଏ ଧର୍ମଯୁଦ୍ଧରେ ଖ୍ରୀଷ୍ଟିଆନ ରାଜାମାନଙ୍କ ଭିତରେ ଏକତା ରକ୍ଷା କରିବାକୁ ଆଜି ଥରେ ଚେଷ୍ଟା କରିବି । ଚେଷ୍ଟାରେ ବିଫଳ ହେଲେ ଆପଣଙ୍କ ପ୍ରସ୍ତାବ ବିଚାର କରିବା ।"

ତେଣେ ରାଜନ୍ୟ-ମଣ୍ଡଳୀ-ପରିଷଦର ସଭା ବସିଥିଲା । ସମସ୍ତେ ଉପସ୍ଥିତ ହୋଇ ରାଜା ରିଗୃର୍ଡ୍ଙ୍କୁ ଅପେକ୍ଷା କରି ରହିଥିଲେ । ତେଣୁ ସେ ଅତି ଶୀଘ୍ର ବିଶପଙ୍କ ସହିତ ସଭା ସ୍ଥାନକୁ ଚାଲିଲେ ।

ସେତେବେଳକୁ ଅନେକେ ରିଗୃର୍ଡ୍ଙ୍କ କାର୍ଯ୍ୟର ସମାଲୋଚନା କରି ତାଙ୍କୁ ବିଶେଷ ସମ୍ମାନ ଦେଖାଇବାର କାରଣ ନାହିଁ ବୋଲି କହୁଥିଲେ । କେହି କେହି ତାଙ୍କ ଉପରେ ସବୁ ଦୋଷ ଲଦାଇ ଦେଉଥିଲେ । ମାତ୍ର ରିଗୃର୍ଡ୍ ସଭା ଗୃହକୁ ଆସୁଥିବାର ଦେଖି ସମସ୍ତେ ନୀରବ ହୋଇଗଲେ ଓ ସେ ଗୃହରେ ପ୍ରବେଶ କଲାକ୍ଷଣି ସମସ୍ତେ ଠିଆ ହୋଇ ରିଗୃର୍ଡ୍ଙ୍କର ଦୀର୍ଘଜୀବନ କାମନା କଲେ ।

ରିଗୃର୍ଡ୍ ସେମାନଙ୍କୁ ଧନ୍ୟବାଦ ଦେଇ ଆସନ ଗ୍ରହଣ କଲେ ଓ ନିଜର କେତେକ କାର୍ଯ୍ୟ ସକାଶେ ଦୁଃଖ ପ୍ରକାଶ କରି କ୍ଷମା ପ୍ରାର୍ଥନା କଲେ । ସେ ରାଜନ୍ୟ ବର୍ଗଙ୍କୁ ସମ୍ବୋଧନ କରି

କହିଲେ, "ମୋର ଆଚରଣରେ କେହି ବିରକ୍ତ ହୋଇ ପାରିଥାନ୍ତି, କିନ୍ତୁ ସେଥିଲାଗି ଧର୍ମଯୁଦ୍ଧ ବନ୍ଦ କରିବା ମୋର ଅଭିପ୍ରାୟ ନୁହେଁ । ମୁଁ ବିଶେଷଭାବରେ ଅଷ୍ଟ୍ରିଆର ଡ଼ିଉକଙ୍କୁ କ୍ଷମା ମାଗୁଛି । ସେ ଇଂଲଣ୍ଡର ପତାକା ଚୋରି କରିଛନ୍ତି ବୋଲି କହିଥିବାରୁ ମୁଁ ଅତ୍ୟନ୍ତ ଦୁଃଖିତ । ଆପଣମାନଙ୍କ ଭିତରୁ ଯଦି କାହାର ମୋ ବିରୁଦ୍ଧରେ କିଛି ଅଭିଯୋଗ ଥାଏ, ସ୍ୱଚ୍ଛନ୍ଦରେ ପ୍ରକାଶ କରନ୍ତୁ । ମୁଁ ସେଥିପାଇଁ ପ୍ରତିକାର କରିବାକୁ ପ୍ରସ୍ତୁତ ।"

ସମସ୍ତେ ନୀରବ । କିଛି ସମୟ ପରେ ଟେମ୍ପଲର ନାଇଟ-ମାନଙ୍କର ଗ୍ରାଣ୍ଡମାଷ୍ଟର ଉଠିପଡ଼ି କହିଲେ, "ମୋର ସାମାନ୍ୟ ଅଭିଯୋଗ ଅଛି । ରିଚାର୍ଡ଼ ମନେ କରୁଛନ୍ତି ଯେ ଏ ଧର୍ମଯୁଦ୍ଧରେ ସର୍ବାଧିନାୟକତ୍ୱ ହେଉଛି ତାଙ୍କର ଏକ ଅଧିକାର । ଆମେ ସ୍ୱେଚ୍ଛାରେ ତାଙ୍କୁ ସେ ପଦରେ ବରଣ କରିଅଛୁ । କିନ୍ତୁ ସେ ଏହି ପଦର ଅଧିକାରୀ ବୋଲି ମନେ କରିବା ଉଚିତ ନୁହେଁ ।"

ଗ୍ରାଣ୍ଡମାଷ୍ଟରଙ୍କୁ ସମର୍ଥନ କରି କେତେ ଜଣ ଅନୁଚ୍ଚ ସ୍ୱରରେ କିଛି କହିଲେ । ମାତ୍ର ତାହା କାହାରିକୁ ଶୁଣାଗଲା ନାହିଁ । ରିଚାର୍ଡ଼ ମନେ ମନେ କ୍ରୁଦ୍ଧ ହୋଇ ଉଠିଲେ, କିନ୍ତୁ ବାହାରେ କ୍ରୋଧ ପ୍ରକାଶ ନ କରି ସେ ନମ୍ର ଭାବରେ କହିଲେ, "ଯଦି ଅନ୍ୟ କୌଣସି ରାଜା ଏହି ଧର୍ମଯୁଦ୍ଧ ପରିଚାଳନାର ଦାୟିତ୍ୱ ନିଅନ୍ତି, ତେବେ ମୁଁ ଆନନ୍ଦରେ ସାଧାରଣ ନାଇଟରୂପେ ତାଙ୍କ ଅଧୀନରେ ଯୁଦ୍ଧ କରିବାକୁ ପ୍ରସ୍ତୁତ । ମୋର ଇଂରେଜ ସୈନ୍ୟମାନେ ମଧ୍ୟ ତାଙ୍କ ଅଧୀନରେ ରହିବେ । କିନ୍ତୁ ଯଦି ମୋର ବନ୍ଧୁମାନେ ଜେରୁଜେଲମ ତ୍ୟାଗ କରି ଚାଲିଯାଆନ୍ତି, ତେବେ ମୁଁ ଏକାକୀ ମୋର ସ୍ୱଳ୍ପସଂଖ୍ୟକ ସୈନ୍ୟ ଘେନି ଜେରୁଜେଲମ ଉଦ୍ଧାର କରିବାକୁ

ଯିବ । ସେଥିରେ ବିଜୟ ଲାଭ କଲେ ସେ ଗୌରବ ମୋର ନୁହେଁ, ସମଗ୍ର ଖ୍ରୀଷ୍ଟିୟ ମଣ୍ଡଳୀର ।"

ରାଜାଙ୍କର ଏହି ଉକ୍ତି ଯାଦୁମନ୍ତ୍ର ପରି କାର୍ଯ୍ୟ କଲା । କେତେକ ରାଜା ଓ ପାଖରେ ଥିବା ସୈନ୍ୟମାନେ ଉଚ୍ଚ ଧ୍ୱନି କଲେ, "ଇଂଲଣ୍ଡର ରାଜା ରିଚାର୍ଡ଼ ଆମର ନେତା । ସେ ଆମକୁ ନେତୃତ୍ୱ ଦେଇ ଜେରୁଜେଲମ ଅଧିକାର କରିବେ । ଜୟ, ରାଜା ରିଚାର୍ଡଙ୍କର ଜୟ ।" କ୍ରମେ ସମଗ୍ର ଶିବିରରୁ ଶୁଣାଗଲା—ଜୟ, ରିଚାର୍ଡଙ୍କର ଜୟ ।

ସଭା ଭାଙ୍ଗିଲା; ମାତ୍ର ମନ୍‌ସେରାଟର ମାର୍କୁଇସ ଓ ଟେମ୍ପଲର-ମାନଙ୍କ ଗ୍ରାଣ୍ଡମାଷ୍ଟର ଏ ଦୁହିଙ୍କ ମନରେ ଶାନ୍ତି ଆସିଲା ନାହିଁ । ସେମାନଙ୍କ ଭିତରେ ପରାମର୍ଶ ଚାଲିଲା ।

ଗ୍ରାଣ୍ଡମାଷ୍ଟର କହିଲେ, "ମୁଁ ଆଗରୁ କହିଥିଲି, ରିଚାର୍ଡ଼-ଙ୍କୁ ବାନ୍ଧି ରଖିହେବ ନାହିଁ । ସେ ଦୁଇ ପଦ କଥା କହି ଦେଲା ମାତ୍ରେ ଏ ମୂର୍ଖ ଦଳକ ତା ପଛେ ଦୌଡ଼ିବେ । ହୁଏ ତ ସେ ସାଲ-ଦିନ ସଙ୍ଗେ ଗୋଟାଏ କିଛି ଚୁକ୍ତି କରି ଜେରୁଜେଲମର ରାଜା ହୋଇ ବସିବ । ଇଂଲଣ୍ଡର ପତାକା ଚିରାଇ ନେବା ପାଇଁ ତୁମେ ଯେଉଁ କୌଶଳ କରିଥିଲ, ସେଥିରେ କିଛି ଫଳ ହେଲା ନାହିଁ । ତୁମ ବୁଦ୍ଧି ଉପରେ ଆଉ ମୁଁ ନିର୍ଭର କରି ପାରିବି ନାହିଁ । ଏଣିକି ମୁଁ ମୋର ବୁଦ୍ଧି ଅନୁସାରେ କାମ କରିବି ।"

ଗ୍ରାଣ୍ଡମାଷ୍ଟର ଗୋଟାଏ ମୁସଲମାନ ସୈନିକକୁ ଯୁଦ୍ଧରେ ବନ୍ଦୀ କରି ନେଇଥିଲେ । ସେହି ବନ୍ଦୀ ସୈନିକର ପ୍ରତିଜ୍ଞା ଥିଲା—ନିଜର ଜୀବନ ଯାଉ ପଛକେ ରିଚାର୍ଡ଼ଙ୍କୁ ହତ୍ୟା ନକରି ଛାଡ଼ିବ ନାହିଁ । ଗ୍ରାଣ୍ଡମାଷ୍ଟର ପ୍ରସ୍ତାବ କଲେ ଯେ ଏହି ବନ୍ଦୀକୁ କୌଶଳରେ ଛାଡ଼ି ଦିଆଯିବ । ସେ ସୁଯୋଗ ଦେଖି ରିଚାର୍ଡ଼ଙ୍କୁ ହତ୍ୟା କରିବ ।

ଗ୍ରାଣ୍ଡମାଷ୍ଟରଙ୍କର ଜଣେ ଭୃତ୍ୟ ତାକୁ ସାହାଯ୍ୟ କରିବ । ଅବଶ୍ୟ ପରେ ଭୃତ୍ୟଟିକୁ ହତ୍ୟା କରାଯିବ । ତାହାହେଲେ ଏହି ହତ୍ୟାରେ ମାର୍କୁଇସ କିମ୍ବା ଗ୍ରାଣ୍ଡମାଷ୍ଟର କେହି ଲିପ୍ତ ଥିଲେ ବୋଲି ପ୍ରକାଶ ପାଇ ପାରିବ ନାହିଁ ।

ମାର୍କୁଇସ ଏହା ଶୁଣି ଭୟରେ ସ୍ତମ୍ଭୀଭୂତ ହୋଇଗଲେ । ସେ କହିଲେ, "ତୁମର ପ୍ରସ୍ତାବ ଅତି ଭୀଷଣ । ଆଉ ସେ କଥା କହ ନାହିଁ । ଏହାର ପରିଣାମରେ ନିଶ୍ଚୟ ଆମର ମୃତ୍ୟୁ ହେବ । ଏ ଅପରାଧ ଜଣା ପଡ଼ିଲେ ମୃତ୍ୟୁ ଦଣ୍ଡ ଛଡ଼ା ଆଉ କିଛି ହୋଇ ନ ପାରେ ।"

## ତେର : ଭାଇ ଓ ଭଉଣୀ

ରାଜାମାନଙ୍କ ମଧ୍ୟରେ ଅପାତତଃ ଏକତା ପ୍ରତିଷ୍ଠା ହେବା ପରେ ସାର୍ କେନେଥ ଠିକ୍ କାହିଁକି ସେଣ୍ଟ ଜର୍ଜ ପାହାଡ଼ ଛାଡ଼ି-ଯିବାରୁ ପତାକା ଚୋରିଗଲା, ତାହା ବୁଝିବାକୁ ରିଚାର୍ଡ଼ ଚେଷ୍ଟା କଲେ । ରାଣୀଙ୍କର ବିଶ୍ୱସ୍ତ ସହଚରୀ କାଲିଷ୍ଟାଙ୍କଠାରୁ ବିଶଦ ବିବରଣୀ ମିଳିବା ଆଶାରେ ରାଜା ତାଙ୍କୁ ଡକାଇଲେ ।

ରାଣୀ କପରି ଏଡ୍‌ଥଙ୍କୁ ଅପଦସ୍ଥ କରିବେ ବୋଲି ପରି-ହାସରେ ତାଙ୍କଠାରୁ ମୁଦିଟି ଆଣି ବାମନ ହାତରେ କେନେଥଙ୍କୁ ଡକାଇ ଆଣିଥିଲେ, ତାହା କାଲିଷ୍ଟା ବର୍ଣ୍ଣନା କରିଗଲେ । ସେତେ-ବେଳକୁ ରାଜାଙ୍କର କ୍ରୋଧ ଊଣା ପଡ଼ିଯାଇଥିଲା । ସେ ବୁଝି ପାରିଲେ ଯେ ରାଣୀଙ୍କର ଅବିବେକିତାରୁ ଏପରି ଗୋଟାଏ କାଣ୍ଡ ହୋଇ-ଗଲା ।

ତହୁଁ ରାଜା ରିଚାର୍ଡ଼ ରାଣୀ ବେରେଙ୍ଗେରିଅଙ୍କ ତମ୍ବୁକୁ ଯାଇ ତାଙ୍କ ସଙ୍ଗେ ଏହି ବିଷୟରେ କଥାବାର୍ତ୍ତା ହେଲେ । ବାମନ ନିର୍ବୋଧଭାବରେ କେନେଥଙ୍କୁ ରାଣୀଙ୍କ ତମ୍ବୁକୁ ନେଇ ଯାଇଥିବାରୁ ତାକୁ ବିତାଡ଼ିତ କରିବା ସ୍ଥିର ହେଲା । ରିଚାର୍ଡ଼ ସାଲାଦିନଙ୍କ ପାଖକୁ ଉପହାରରୂପେ ଏହି ବାମନକୁ ପଠାଇ ଦେଲେ ।

ରିଚାର୍ଡ଼ ଏତିକିରେ ନିରସ୍ତ ନ ହୋଇ ଏଡ୍‌ଥଙ୍କ ତମ୍ବୁକୁ ମଧ୍ୟ ଗଲେ । ଏଡ୍‌ଥ ଗୋଟିଏ କୃଷ୍ଣବର୍ଣ୍ଣ ଓଢ଼ଣାରେ ମୁଖ ଆବୃତ କରି ବସିଥିଲେ । ରାଜାଙ୍କୁ ଆସିବାର ଦେଖି ସେ ଉଠିପଡ଼ି ତାଙ୍କୁ ଯଥା-

ବଧ୍ ସମ୍ମାନ କଲେ କିନ୍ତୁ କିଛି କହିଲେ ନାହିଁ । ରାଜା ବୁଝି ପାରିଲେ, ଏଭିଥ ଦୁଃଖ ଓ ଅଭିମାନରେ କିଛି କହୁନାହାନ୍ତି ।

ଭଉଣୀଙ୍କର ଅଭିମାନ ଦୂର କରିବା ପାଇଁ ସେ କହିଲେ, "ଏଭିଥ, ତୁ ମୋ ଉପରେ ରାଗ କରିଛୁ । କିନ୍ତୁ ତୋର ବଡ଼ ଭାଇକୁ କଣ ତୁ କ୍ଷମା ଦେବୁନି ? ମନ ଦୁଃଖ କରନା । ତୁ ନିଶ୍ଚେ ସବୁ କଥା ଶୁଣିଥିବୁ । ତୋର ମନ ଦୁଃଖ କରିବାର କିଛି କାରଣ ଆଉ ନାହିଁ ।"

ଏଭିଥ କହିଲେ, "ଭାଇ, ତୁମେ ମୋର ଭାଇ, ପୁଣି ଏ ଧର୍ମଯୁଦ୍ଧର ସର୍ବାଧିନାୟକ । ଭାଇ ହିସାବରେ ତୁମେ ମୋର ଅନୁରୋଧ ରକ୍ଷା କରି କେନେଥଙ୍କର ଦୋଷ କ୍ଷମା କରିପାରିଥାନ୍ତ; କିମ୍ବା ରାଜା ହିସାବରେ ତାଙ୍କୁ ପ୍ରାଣଦଣ୍ଡ ଦେଇ ପାରିଥାନ୍ତ । କିନ୍ତୁ ତୁମେ ଏହି ଦୁଇଟିରୁ କୌଣସିଟି ନ କରି ତାଙ୍କୁ ଶତ୍ରୁ ହାତରେ କ୍ରୀତଦାସ ରୂପେ ସମର୍ପଣ କରିଦେଲ । ଏହା କଣ ତୁମ ପକ୍ଷରେ ଉଚିତ ହେଲା ? ମୃତ୍ୟୁ ଦଣ୍ଡ ଦେଇଥିଲେ ଲୋକେ ହୁଏତ ତୁମର ନ୍ୟାୟ ବିଚାର ଅଛି ବୋଲି ମନେ କରିଥାନ୍ତେ । କିନ୍ତୁ ଏବେ ହେଲା କଅଣ ? ତୁମେ ଧର୍ମଯୁଦ୍ଧର ଜଣେ ପ୍ରସିଦ୍ଧ ବୀରକୁ ହରାଇଲ । ଆଉ କେତେକ ଈର୍ଷୁକ ଲୋକଙ୍କୁ ଗୋଟାଏ ସୁଯୋଗ ମିଳିଗଲା । ସେମାନେ କହୁଛନ୍ତି—କେନେଥ ସାହସରେ, ବୀରତ୍ୱରେ, କାହିଁରେ ରିଚାର୍ଡ଼ଙ୍କଠାରୁ ଊଣା ନୁହନ୍ତି । ସେଥିପାଇଁ ରାଜା କୌଶଳରେ ତାଙ୍କୁ ଅନ୍ତର କରିଦେଲେ ।"

ରିଚାର୍ଡ଼—ଏଭିଥ, ତୁ କଅଣ ମୋତେ ଏତେ ନୀଚ ହୀନ ମନେ କରୁ ଯେ ମୁଁ ଅନ୍ୟ ଜଣେ ବୀରର 'ବୀରତ୍ୱ ବା ସାହସ ଦେଖିଲେ ତାଙ୍କୁ ହିଂସା କରି ତାର ଅନିଷ୍ଟ କରିବି ? ନା, ନା,

ତୁ ଯାହା କହୁଛୁ, ତାହା ତୋ ମୁହଁର କଥା, ମନର କଥା ନୁହେଁ । ତୁ ତାକୁ ପ୍ରେମ କରୁ ବୋଲି ମୋପ୍ରତି କଣ ଅନ୍ୟାୟ କରିବୁ ?

ଏଡ୍‌ଥ—ସେ ମୋର ପ୍ରେମିକ ? ହଁ, ଯଦି ତା ହୋଇଥାଏ ସେଥିପାଇଁ ସେ ଯଥେଷ୍ଟ ମୂଲ୍ୟ ଦେଇ ସାରିଛନ୍ତି । ମୁଁ ତାଙ୍କର ପ୍ରେମିକା ହେବାର ଯୋଗ୍ୟ ନୁହେଁ ସତ, କିନ୍ତୁ ଏ ଯୁଦ୍ଧରେ ମୁଁ ତାଙ୍କୁ ବିରବର ପ୍ରେରଣା ଯୋଗାଇ ଆସିଛି । କିନ୍ତୁ ମୁଁ ଯେ ରାଜକନ୍ୟା, ଇଂଲଣ୍ଡର ରାଜା ରିଚାର୍ଡ଼ଙ୍କର ଭଉଣୀ ଏକଥା କେବେ ହେଲେ ଭୁଲି ଯାଇନାହିଁ । ମୁଁ ଯେତିକିର ଜାଣେ, କେନେଥ ମଧ୍ୟ ତାଙ୍କର ଆସନ ଭୁଲିଯାଇ କେବେ ନିଜର ସୀମା ଅତିକ୍ରମ କରିନାହାନ୍ତି ।"

ରିଚାର୍ଡ଼—ମୁଁ ତା ଜାଣେ । ତୋର ଆସନ ଅତୁଳ ଉଚ୍ଚ ହେବ । ମୁଁ ସେଥିର ବ୍ୟବସ୍ଥା କରିବାକୁ ପ୍ରସ୍ତୁତ । ଜଣେ ବିଶ୍ୱାସ-ଘାତକ ଇତର ସ୍କଟଲଣ୍ଡର ଲୋକକୁ ବିବାହ କରିବା ଅପେକ୍ଷା ଜଣେ ପରାକ୍ରମୀ, ସଭ୍ୟନିଷ୍ଠ ମୁସଲମାନକୁ ବିବାହ କରିବା ନିଶ୍ଚୟ ତୋ ପକ୍ଷରେ ଅଧିକ ଗୌରବର ବିଷୟ ହେବ ।

ଏଡ୍‌ଥ—ନା, ନା, ତା କଦାପି ହୋଇ ନପାରେ ।

ରିଚାର୍ଡ଼—ଅଚ୍ଛା, ଏ ବିଷୟରେ ପରେ ଯାହା କିଛି ସିଦ୍ଧାନ୍ତ ହେବ ।

ରାଜା ଏଡ୍‌ଥଙ୍କ ମନୋଭାବ ବୁଝିପାରି ମନେ ମନେ ଅସନ୍ତୁଷ୍ଟ ହେଲେ । ସେ ଚିନ୍ତିତ ଭାବରେ ତମ୍ବୁ ତ୍ୟାଗ କରି ଚାଲିଗଲେ ।

## ଚଉଦ : କାଫ୍ରି ଭୃତ୍ୟ

ସାର୍ କେନେଥ ଋଗ୍ଭର୍ଡ଼ଙ୍କ ଶିବିରରୁ ବିତାଡ଼ିତ ହେବାର ଚତୁର୍ଥ ଦିନ । ରାଜା ରିଗ୍ଭର୍ଡ଼ ତମ୍ବୁରେ ବସି ସାନ୍ଧ୍ୟ ସମୀରଣ ସେବନ କରୁଛନ୍ତି । ଆଜି ରାଜାଙ୍କ ପାଖରେ ଡ଼ଭିକ୍ସ ନାହାନ୍ତି । ନିକଟବର୍ତ୍ତୀ ଅସ୍କାଲନ ସହରରୁ ଅଧିକ ସୈନ୍ୟ ଓ ଖାଦ୍ୟ ଦ୍ରବ୍ୟ ସଂଗ୍ରହ କରିବାକୁ ସେ ଯାଇଛନ୍ତି । କାଲି ସମସ୍ତ ଧର୍ମଯୁଦ୍ଧର ସୈନିକମାନଙ୍କୁ ରାଜା ପରିଦର୍ଶନ କରିବେ ବୋଲି ସମଗ୍ର ଶିବିରରେ ଚାଞ୍ଚଲ୍ୟ ଖେଳି ଯାଇଛି । ଶିବିରରୁ ସମର ବାଦ୍ୟ ଭାସି ଆସୁଛି । ରାଜା ତାହା ଶୁଣି ଆନନ୍ଦରେ ମଗ୍ନ । ହଠାତ୍ ସାର୍ ନେଭିଲ୍ ନାମକ ଜଣେ ନାଇଟ ଆସି ରାଜାଙ୍କୁ ଜଣାଇଲେ ଯେ ସୁଲ୍‌ତାନ ସାଲାଦିନଙ୍କ ନିକଟରୁ ଜଣେ ଲୋକ ଖଣ୍ଡିଏ ପତ୍ର ଆଣି ଅପେକ୍ଷା କରୁଛି ।

ତାହାକୁ ତମ୍ବୁକୁ ଆଣିବା ପାଇଁ ରାଜା ଆଦେଶ ଦେଲେ । କିଛି କ୍ଷଣ ପରେ ଜଣେ କାଫ୍ରି ଜାତୀୟ ଲୋକ ତମ୍ବୁରେ ପ୍ରବେଶ କରି ଜାନୁପାତ ପୂର୍ବକ ରାଜାଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କଲା । ଲୋକଟିର ଗଠନ ସୁନ୍ଦର; ଶରୀର ଉନ୍ନତ; କିନ୍ତୁ ବର୍ଣ୍ଣ ଘୋର କୃଷ୍ଣ । ତାର ମସ୍ତକର କେଶ ମଧ୍ୟ ଘନ କୃଷ୍ଣବର୍ଣ୍ଣ ; ତା ଉପରେ ଗୋଟିଏ ଶ୍ୱେତ ବର୍ଣ୍ଣର ପଗଡ଼ି । ତାର ବାହୁ ଓ ଗୋଡ଼ରେ କୌଣସି ଆବରଣ ନ ଥିଲା । କେବଳ ପାଦ ଦୁଇଟି ଯୋତାରେ ଆବୃତ । କଟିଦେଶରୁ ଗୋଟିଏ ଅସି ଝୁଲୁଥିଲା । ତା ସାଙ୍ଗରେ ଥିଲା ଗୋଟିଏ ବୃହଦାକାର କୁକୁର । ତାହା ସୁନାର ଶୃଙ୍ଖଳରେ ଆବଦ୍ଧ । ଶୃଙ୍ଖଳର ପ୍ରାନ୍ତଟି ଥିଲା କାଫ୍ରିର ହାତରେ ।

ଏହି ଲୋକଟିକୁ ଦେଖି ରାଜା ଟିକିଏ ବିସ୍ମିତ ହେଲେ । କାଫ୍ରି ଜଣକ ସାଲାଦିନଙ୍କ ପତ୍ରଟି ରାଜାଙ୍କ ହାତକୁ ବଢ଼ାଇ ଦେଲା । ସେଥିରୁ ରାଜା ଜାଣି ପାରିଲେ ଯେ ଏହି ଲୋକଟିର ନାମ ଜୋହିର; ତାକୁ ଭୃତ୍ୟରୂପେ ରଖିବା ପାଇଁ ସାଲାଦିନ ପଠାଇ ଅଛନ୍ତି । ସେ ବଳବାନ୍ ଓ ଚତୁର । ତାହା ଉପରେ ବିଶ୍ୱାସ ସ୍ଥାପନ କରି ଯାଇ-ପାରେ । ତାର ଏକମାତ୍ର ଦୋଷ ହେଉଛି ସେ ମୂକ । ରାଜା ପଚାରିଲେ, "ତୁମେ କଅଣ ମୁସଲମାନ ?" କାଫ୍ରି ନିଜର ବକ୍ଷ ଉପରେ ପବିତ୍ର କ୍ରୁଶ ଚିହ୍ନ ଅଙ୍କନର ଭଙ୍ଗୀ ଦ୍ୱାରା ଜଣାଇ ଦେଲା— ସେ ମୁସଲମାନ ନୁହେଁ, ଖ୍ରୀଷ୍ଟିଆନ ।

କାହିଁକି ସେ ମୂକ ହେଲା ବୋଲି ରାଜା ପଚାରିବାରୁ ସେ କେବଳ ଆକାଶକୁ ହାତ ଦେଖାଇ ଜଣାଇ ଦେଲା ଯେ ଭାଗ୍ୟ-ଦୋଷରୁ ସେ ଏପରି ହୋଇଅଛି । ତାହାପରେ ରାଜା ଗମ୍ଭୀର କହିଲେ, "ଯାହାହେଉ, ମନୁଷ୍ୟର ଅତ୍ୟାଚାରରେ ତୁମେ ମୂକ ହୋଇ ନାହିଁ । ଅଚ୍ଛା, ତୁମେ ମୋର ସାଞ୍ଜୁ ପରିଷ୍କାର କରିପାରିବ ?"

କାଫ୍ରି ଭୃତ୍ୟ ମସ୍ତକ ସଞ୍ଚାଳନ କରି ସମ୍ମତି ଜଣାଇଲା ଓ ସାଞ୍ଜୁଟା ଉଠାଇ ନେଇ ପରିଷ୍କାର କରିବାରେ ଲାଗିଲା । ତାର କାର୍ଯ୍ୟର ଢଙ୍ଗ ଦେଖି ରାଜା ଜାଣିପାରିଲେ ଯେ ସେ ଏ ପ୍ରକାର କାମରେ ଅଭ୍ୟସ୍ତ ।

ରାଜା ସନ୍ତୁଷ୍ଟ ହୋଇ କହିଲେ, "ବେଶ୍, ତୁମେ ମୋର ପାଖେ ପାଖେ ରହି ମୋର ସେବା କରିବ । ସାଲାଦିନ ତୁମକୁ ପଠାଇ ମୋତେ ଅନୁଗୃହୀତ କରିଛନ୍ତି । ଆଉ ଗୋଟିଏ ସୁବିଧା ହେଉଛି, ତୁମେ ମୂକ ; କାହାରି ଆଗରେ ଖରା ମିଛ କହି ପାରିବ ନାହିଁ ।"

କାଫ୍ରି ଭୃତ୍ୟ ମସ୍ତକ ଅବନତ କରି ସ୍ୱୀକୃତି ଜଣାଇଲା ।

ଏହି ସମୟରେ ସାର୍ ନେଭିଲ ରାଜାଙ୍କ ହାତକୁ କେତେ-ଖଣ୍ଡି ପତ୍ର ବଢ଼ାଇ ଦେଇ ବିଦାୟ ନେଇ ଗଲେ । ରାଜା ଏଗୁଡ଼ିକ ପଢିବାରେ ଲାଗିଲେ । ସେଥିରୁ ସେ ଜାଣିପାରିଲେ ଯେ ଇଂଲଣ୍ଡରେ ଅଶାନ୍ତି ଉପସ୍ଥିତ ହୋଇଅଛି । ଈଶ୍ବରଙ୍କ ଧର୍ମଯୁଦ୍ଧ ଚଳାଇବା ଲାଗି ପାଲେଷ୍ଟାଇନକୁ ଆସିଥିବାରୁ ତାଙ୍କ ଭାଇ ଜନ୍ ରାଜକାର୍ଯ୍ୟ ବୁଝୁଥିଲେ । ତାଙ୍କର ନିର୍ଦ୍ଦୟ ଆଚରଣରେ ପ୍ରଜାସାଧାରଣ ଅସନ୍ତୁଷ୍ଟ । କେତେକ ଅଞ୍ଚଳରେ ପ୍ରଜାମାନେ ବିଦ୍ରୋହୀ ହୋଇ-ଅଛନ୍ତି । ନିଜ ରାଜ୍ୟର ଦୁରବସ୍ଥା ଚିନ୍ତା କରି ସେ ବିମର୍ଷ ହୋଇ ପଡ଼ିଲେ । ପତ୍ରଗୁଡ଼ିକ ବାରମ୍ବାର ପଢ଼ି ସେଗୁଡ଼ିକ ପାଖ ଟେବୁଲ୍ ଉପରେ ରଖି ଦେଲେ ।

ଟାମ୍ପ୍ରି ଭୃତ୍ୟଟି ରାଜାଙ୍କର ଗୋଟିଏ ବୃହଦାକାର ଢାଲ ସଫା କରିବାରେ ଲାଗିଥିଲା । ତାର ଚେଷ୍ଟାରେ ଢାଲଟି ଏତେ ଚିକ୍କଣ ହୋଇଗଲା ଯେ ସେଥିରେ ତାର ମୁହଁର ପ୍ରତିବିମ୍ବ ଦେଖାଗଲା । କୁକୁରଟି ଟାମ୍ପ୍ରି ନିକଟରେ ଶୋଇଥାଏ ।

ଏହି ସମୟରେ ଜଣେ ମୁସଲମାନ ନର୍ତ୍ତକ ଆସି ରକ୍ଷୀମାନଙ୍କ ଆଗରେ ନୃତ୍ୟ କରିବାକୁ ଲାଗିଲା । ନୃତ୍ୟ ଗୀତ ଦ୍ୱାରା ସନ୍ତୁଷ୍ଟ କରି କିଛି ପାରିତୋଷିକ ପାଇବା ଆଶାରେ ସମୟେ ସମୟେ ମୁସଲମାନ ନର୍ତ୍ତକମାନେ ଶିବିରକୁ ଆସୁଥିଲେ । ତେଣୁ ଏଥିରେ କେହି ବିସ୍ମିତ ହୋଇ ନ ଥିଲେ କିମ୍ବା କିଛି ସନ୍ଦେହ କରି ନଥିଲେ । କିନ୍ତୁ ସମସ୍ତ ନୃତ୍ୟ କରିବା ପରେ ଲୋକଟି ଅବସନ୍ନ ହୋଇ ତଳେ ପଡ଼ିଗଲା । ଜଣେ ସୈନିକ ତାର କ୍ଳାନ୍ତି ଦୂର କରିବା ଲାଗି ତାକୁ କିଛି ମଦ୍ୟ ପିଆଇ ଦେଲା । ସେ ସେଇଠାରେ ଶୋଇ ପଡ଼ିଲା । ସୈନ୍ୟମାନଙ୍କ ଗୋଳମାଳ ଶୁଣି ରାଜା ବିରକ୍ତି ପ୍ରକାଶ କରିବାରୁ ସମସ୍ତେ ଚୁପ୍ ହୋଇଗଲେ ।

ଏଣେ ରାଜା ତମ୍ବୁରେ ଚିନ୍ତାକୁଳ ଭାବରେ ବସି ଚିଠିଗୁଡ଼ିକ ବାରମ୍ବାର ପଢ଼ୁଥାନ୍ତି ଓ କାଫ୍ରି ଭୃତ୍ୟ ଜୋହକ ଢାଲଟିକୁ ମାଜିବାରେ ଲାଗିଥାଏ । ପ୍ରାୟ ଶହେ ଗଜ ଦୂରରେ ରକ୍ଷୀମାନଙ୍କ ଭିତରୁ କେତେକେ ଛିଡ଼ା ହୋଇଥିଲେ, ଅନ୍ୟ କେତେଜଣ କୋମଳ ଘାସ ଉପରେ ବସିଥିଲେ । ରାଜାଙ୍କ ତମ୍ବୁ ଓ ସୈନ୍ୟମାନଙ୍କ ମଧ୍ୟ-ସ୍ଥଳରେ ମୁସଲମାନ ଫକିର ଶୋଇ ରହିଥିଲା ।

କାଫ୍ରି ଭୃତ୍ୟ ଢାଲ ମାଜୁଥିଲାବେଳେ ସେଥିରେ ତଳେ ଶୋଇଥିବା ମୁସଲମାନ ଫକିରର ପ୍ରତିବିମ୍ବ ପଡ଼ୁଥିଲା । ଜୋହକ ତାକୁ ଚାହିଁ ଦେଖିଲା ଯେ ସେ ଲୋକଟି ଟିକିଏ ମୁଣ୍ଡ ଟେକି ଚାରି-ଆଡ଼କୁ ଭଲରୂପେ ଦେଖିନେଲା । ତାପରେ କିଛି ସମୟ ଚୁପ୍ କରି ପଡ଼ିରହିଲା । ଏହି ସମୟରେ ଜୋହକ ପ୍ରତିବିମ୍ବକୁ ଚାହିଁ ଜାଣି ପାରିଲା ଯେ ଲୋକଟା ଗଡ଼ିଗଡ଼ି ରାଜାଙ୍କର ଖୁବ୍ ନିକଟକୁ ଆସିଲା ।

ହଠାତ୍ ସେ ମୁସଲମାନ ଫକିର ଉଠିପଡ଼ି ଗୋଟାଏ ଛୁରୀ ଧରି ରାଜାଙ୍କୁ ଆଘାତ କରିବାକୁ ବାହାରିଲା । କିନ୍ତୁ ସେ ରାଜାଙ୍କୁ ଆଘାତ କରିବା ପୂର୍ବରୁ ଜୋହକ ତାର ହାତରେ ଏପରି ପ୍ରହାର କଲା ଯେ ତାର ଲକ୍ଷ୍ୟ ଭ୍ରଷ୍ଟ ହୋଇଗଲା । ମାତ୍ର ଜୋହକର ହାତରେ ଛୁରୀର ଆଘାତ ଲାଗିଲା ।

ରାଜା ରିଚର୍ଡ଼ ନିଜ ସ୍ଥାନରୁ ଉଠି ପଡ଼ିଲେ । ତାଙ୍କ ମୁହଁରେ ବିସ୍ମୟ ବା କ୍ରୋଧର ଚିହ୍ନ ନଥିଲା । ସେ ନିଜର ଚୌକିଟି ଟେକି ନେଇ ସେଥିରେ ଫକିରକୁ ଆଘାତ କଲେ । ସଙ୍ଗେ ସଙ୍ଗେ ତାର ପ୍ରାଣବାୟୁ ବାହାରିଗଲା ।

ରକ୍ଷୀମାନେ ଗୋଳମାଳ ଶୁଣି ରାଜାଙ୍କ ତମ୍ବୁ ଭିତରକୁ ପଶି-ଆସିଲେ । ସେମାନଙ୍କୁ ଦେଖି ରାଜା ବିରକ୍ତ ହୋଇ କହିଲେ,

"ତୁମେମାନେ ତୁମର କାମ ବେଶ୍ କରୁଛ ? ଏ ମୁସଲମାନର ଶବଟାକୁ ବାହାରେ ଫିଙ୍ଗିଦିଅ ।"

ତାପରେ କାଫ୍ରି ଭୃତ୍ୟକୁ ଲକ୍ଷ୍ୟ କରି ରାଜା କହିଲେ, "ତୁମେ ମୂକ ହେଲେହେଁ ମୋର ପ୍ରାଣ ରକ୍ଷା କରିଛ ।"

ତାର ହାତରେ ଛୁରୀର କ୍ଷତ ଦେଖି କେହି ଜଣେ ରକ୍ତ ଶୋଷି ବାହାର କରି ଦେବାକୁ ରାଜା ରକ୍ଷୀମାନଙ୍କୁ ଆଦେଶ ଦେଲେ । ଛୁରୀ ବିଷାକ୍ତ ହୋଇଥିଲେବି ରକ୍ତ ଶୋଷି ଫିଙ୍ଗି ଦେଲେ ବିପଦର ଆଶଙ୍କା ନଥିଲା; କିନ୍ତୁ ସେ ରକ୍ତ ଯାହା ରକ୍ତରେ ମିଶିବ ତାର ପ୍ରାଣ ନାଶର ପୂର୍ଣ୍ଣ ସମ୍ଭାବନା ଥିଲା । କୌଣସି ରକ୍ଷୀ ନିଜ ଜୀବନକୁ ବିପନ୍ନ କରି ଜୋହିକ ହାତରୁ ରକ୍ତ ଶୋଷିବାକୁ ବାହାରିଲେ ନାହିଁ । ରାଜା ଚିତ୍କାର କଲେ, "ତୁମେମାନେ ମୃତ୍ୟୁକୁ ଏତେ ଭୟ କରି ଏଠାକୁ ଆସିଛ ? ଅଚ୍ଛା, ଧର୍ମ୍ମତଃ ଯାହା ନିଜେ କରିବାକୁ କୁଣ୍ଠିତ, ତାହା କରିବା ପାଇଁ ଅନ୍ୟକୁ ଆଦେଶ ଦିଏ ନାହିଁ; ଦେଖ ।"

ଏହା କହି ରାଜା ନିଜେ କ୍ଷତ ସ୍ଥାନରେ ମୁହଁ ଲଗାଇ ରକ୍ତ ଶୋଷି ଆଣି ଫିଙ୍ଗିଦେଲେ । ଜୋହିକ ରାଜାଙ୍କଠାରୁ ହାତ ଟାଣିନେଇ ଯିବାକୁ ଚେଷ୍ଟା କରୁଥିଲା, କିନ୍ତୁ ରାଜା ବଳପୂର୍ବକ ତାକୁ ଧରି ରକ୍ତ ଶୋଷି ନେଲେ । ସଙ୍ଗେ ସଙ୍ଗେ ଜୋହିକ କ୍ଷତ ସ୍ଥାନକୁ ଖଣ୍ଡିଏ କନାରେ ବାନ୍ଧିଦେଲା । ରାଜା ସାର୍ ନେଭିଲଙ୍କୁ କହିଲେ, "ଏଇ ଭୃତ୍ୟଟିକୁ ତୁମର ତମ୍ବୁକୁ ନେଇ ଯତ୍ନରେ ରଖ । ତାର ଯେପରି କୌଣସି ଅସୁବିଧା ନ ହୁଏ, ସେଥିପ୍ରତି ଦୃଷ୍ଟି ରଖିଥିବ । କିନ୍ତୁ ତାକୁ ଶିବିରରୁ ବାହାରକୁ ଯିବାକୁ ଦେବନାହିଁ । ସେ ବାହାରକୁ ଯାହା ଦେଖା ଯାଉଛି, ପ୍ରକୃତରେ ତାର ମୂଲ୍ୟ ତହିଁରୁ ଢେର୍ ବେଶି ।"

ସାର୍ ନେଭିଲଙ୍କର ଇଚ୍ଛା ଥିଲା, ରାଜା ଋଷୀମାନଙ୍କୁ ଦଣ୍ଡ ଦିଅନ୍ତୁ । କିନ୍ତୁ ରାଜା କହିଲେ, "ମୋର ଜୀବନ ଉପରେ ଆକ୍ରମଣ ହୋଇଲା ବୋଲି ମୁଁ ପ୍ରତିଶୋଧ ନେବି ? ଇଂଲଣ୍ଡର ପତାକା ଚୋରି ଅପେକ୍ଷା ମୋ ଉପରେ ଆକ୍ରମଣ କରିବା କଅଣ ଗୁରୁତର ବ୍ୟାପାର ? କାହିଁ, ସେଥିପାଇଁ ତ ଏତେବେଳ ଯାଏ କାହାକୁ ଦଣ୍ଡ ଦିଆଯାଇ ନାହିଁ । ମୋର ବନ୍ଧୁ ସାଲଦାନ ଲେଖିଛନ୍ତି ଯେ ଏହି କାପ୍ତ୍ରି ଭଡ଼ୀ ଦ୍ୱାରା ଅନେକ ରହସ୍ୟ ପ୍ରକାଶ ପାଇବ । ତେବେ ଦେଖାଯାଉ, କଅଣ ହେଉଛି । ଯଦି କୋହକ ପତାକା ଚୋରର ସନ୍ଧାନ ଦେଇପାରେ, ତାକୁ ଉପଯୁକ୍ତ ପୁରସ୍କାର ଦିଆଯିବ ।"

କୋହକ ଅଙ୍ଗ ଭଙ୍ଗୀ ଦ୍ୱାରା ଜଣାଇ ଦେଲା ଯେ ସେ ଚୋରର ସନ୍ଧାନ ଦେଇ ପାରିବ ।

ରାଜା କହିଲେ, "ତୁମର କଥା କହିବାର ଶକ୍ତି ନାହିଁ । ଏ ବିଷୟରେ ତୁମେ ଯାହା ଜାଣ, ମୁଁ ବୁଝିବି କିପରି ? ଅଚ୍ଛା, ତୁମେ ଲେଖି ପଢ଼ି ପାର ?"

କୋହକ ମଥା ଲାଡ଼ି ଜଣାଇଦେଲା ଯେ ସେ ଲେଖି ପଢ଼ି ପାରେ ।

ରାଜା ଆଦେଶ ଦେଲେ, "ତାକୁ ଲେଖିବାପାଇଁ କାଗଜ, କଲମ ପ୍ରଭୃତି ଦିଅ । ଏ ସାମାନ୍ୟ ଲୋକ ନୁହେଁ । ମଣିଷ ଭିତରେ ଗୋଟାଏ ରତ୍ନ ।"

କୋହକ ଖଣ୍ଡିଏ କାଗଜରେ ଲେଖିଦେଲା ଯେ ଅସନ୍ତା କାଲି ସୈନ୍ୟମାନଙ୍କ ପରିଦର୍ଶନ କରିବାକୁ ଯିବାବେଳେ ରାଜା ତାକୁ ତାର କୁକୁର ସହିତ ତାଙ୍କ ପାଖେ ରହିବାକୁ ଦେଲେ ସେ କୁକୁର ସାହାଯ୍ୟରେ ଚୋରକୁ ଧରିଦେବ ।

ରାଜା ସାର୍ ନେଭିଲଙ୍କୁ କହିଲେ, "ଜୋହାନଙ୍କର ପ୍ରସ୍ତାବଟା ବେଶ୍ ମନକୁ ପାଉଛି । କାଲି ସବୁ ରାଜା ଓ ତାଙ୍କର ସୈନ୍ୟମାନେ ମୋ ସାମନାରେ ଇଂଲଣ୍ଡର ଜାତୀୟ ପତାକାକୁ ସମ୍ମାନ ଦେଖାଇ ପ୍ରଣାମ କରିବେ । ଆମ ପତାକାକୁ ଯେଉଁ ଅପମାନ ହୋଇଛି, ତାର ପ୍ରତିକାର ସ୍ୱରୂପ ଏହା କରାଯିବ ବୋଲି ସବୁ ରାଜା ସ୍ୱୀକୃତ ହୋଇଅଛନ୍ତି । କୌଣସି ରାଜା ବା ସୈନ୍ୟ ସେଠାରେ ଅନୁପସ୍ଥିତ ହେବେ ନାହିଁ; କାରଣ ଯିଏ ନ ଆସିବ, ତାହା ଉପରେ ସନ୍ଦେହ ହେବ । ଯଦି ଜୋହାନ ଷ୍ଟେରକୁ ଲୁଚାଇଦିଏ ତାକୁ କଠୋର ଦଣ୍ଡ ଦିଆଯିବ, ସେ କଥା ମୁଁ ଜାଣେ ।"

ସାର୍ ନେଭିଲ ବିନୀତ ଭାବରେ କହିଲେ, "ମହାରାଜ, ବର୍ତ୍ତମାନ ସବୁ ରାଜା ମିଳିତ ହୋଇ ଆପଣଙ୍କର ଆନୁଗତ୍ୟ ସ୍ୱୀକାର କରିଅଛନ୍ତି । ଏପରି ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ସୈନ୍ୟ ପ୍ରଦର୍ଶନୀରେ ଗତ କଥା ନେଇ ବିବାଦ ଜନ୍ମାଇବା ଉଚିତ ହେବ କି ?"

ରିଚାର୍ଡ଼—କିନ୍ତୁ ଷ୍ଟେରକୁ ଧରିବାକୁ ହେବ ନାହିଁ ବୋଲି ମୁଁ କେବେ କାହାରିକୁ କହିନାହିଁ । ତେଣୁ ଏଥିରେ କିଛି ଅନ୍ୟାୟ ହେବ ନାହିଁ । ଏବେ ଆଉ ଗୋଟିଏ ବିଷୟରେ ତୁମର ପରାମର୍ଶ ଲୋଡ଼ା । ସାଲାଦିନ ଲେଖିଛନ୍ତି, ସେ ଜୋହାନଦ୍ୱାରା ଏଡିଥଙ୍କ ପାଖକୁ ଖଣ୍ଡିଏ ଚିଠି ପଠାଇଅଛନ୍ତି । ତାଙ୍କର ଅନୁରୋଧ, ସେ ଚିଠିଟି ଯେପରି ଏଡିଥଙ୍କର ହସ୍ତଗତ ହୁଏ । ଏ ବିଷୟରେ ତୁମର ମତ କଅଣ ?

ନେଭିଲ—ରାଜଭଗିନୀଙ୍କ ନିକଟକୁ ପତ୍ର ଲେଖିବା ସାଲାଦିନଙ୍କ ପକ୍ଷରେ ଅତିରିକ୍ତ ଔଦ୍ଧତ୍ୟର ପରିଚୟ ।

ରିଚାର୍ଡ଼—ମୁଁ କିଛି ଠିକ୍ କରିନାହିଁ । ଆଗେ ଦେଖାଯାଉ, ଜୋହାନ ପତାକା ଚୋରକୁ ଧରି ପାରୁଛି କି ନା । ତାପରେ ଏଡ଼ିଥଙ୍କ ପତ୍ର କଥା ବିଚାର କରିବା । ଏ କାଫ୍ରି ଜୋହାନକୁ

ଦେଖିଲେ ମୋର ମନେହୁଏ, ସେ ଜଣେ ଉଚ୍ଚ ଦରର ଲୋକ । ତା ଉପରେ ଦୃଷ୍ଟି ରଖିଥିବ । ହଁ, ଏନ୍‌ଗାଜିର ସନ୍ନ୍ୟାସୀଙ୍କୁ ମୋ ପାଖକୁ ଡକାଇଦେବ । ମୋର ତାଙ୍କ ସଙ୍ଗେ କିଛି କଥା ଅଛି ।

ଜୋହନଙ୍କୁ ସଙ୍ଗରେ ନେଇ ସାର୍ ନେଭିଲ୍ ବିଦାୟ ହେଲେ । ରିଚାର୍ଡ୍‌ଙ୍କ ମନୋଭାବ କଅଣ, ସେ ଜୋହନଙ୍କୁ ବିଶ୍ୱାସ କରନ୍ତି କି ନା—ଏସବୁ ନେଭିଲ୍‌ଙ୍କ ପାଖରେ ଦୁର୍ବୋଧ ହୋଇ ରହିଗଲା ।

## ପନ୍ଦର : ଜୋହନଙ୍କର ପରିଚୟ

ପାଠକମାନଙ୍କର ମନେ ଥିବ, ରାଜା ରିଗୁର୍ଡ଼ ସାର୍ କେନେଥଙ୍କୁ ପ୍ରାଣଦଣ୍ଡ ନ ଦେଇ ମୁସଲମାନ ହକିମ୍‌ଙ୍କ ହସ୍ତରେ ଅର୍ପଣ କରିଥିଲେ । କେନେଥ ହକିମ୍‌ଙ୍କ ସଙ୍ଗେ ମୁସଲମାନ ଶିବିରରେ ଉପସ୍ଥିତ ହେଲେ । ତାଙ୍କ ଜୀବନରେ ଯେଉଁ ପରିବର୍ତ୍ତନ ଘଟିଯାଇଥିଲା, ତାହା ସ୍ମରଣ କରି ସେ ବିଷାଦରେ ବୁଡ଼ିରହିଲେ । ଅନେକ ସମୟରେ ତାଙ୍କ ଆଖିରୁ ଅଶ୍ରୁଧାରା ବହୁଥିଲା । ହକିମ୍ ମହାଶୟ ଅବଶ୍ୟ ତାଙ୍କୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ, ମାତ୍ର ସେଥିରେ ତାଙ୍କର ଦୁଃଖ ନ କମି ଆହୁରି ବଢ଼ିଲା ମାତ୍ର । ତତ୍ପରଦିନ ପ୍ରାତଃକାଳରେ ମୁସଲମାନ ଶିବିର ତ୍ୟାଗ କରିବା ନିମନ୍ତେ ସେ ଆୟୋଜନ କରିବାକୁ ଲାଗିଲେ ।

ସେଦିନ ରାତିରେ ସାର୍ କେନେଥଙ୍କର ଆଦୌ ନିଦ୍ରା ହେଲାନାହିଁ । ସିନ୍ଦୂର ଫାଟିବା ପୂର୍ବରୁ ହକିମ୍ ତାଙ୍କର ଅନୁଚର-ମାନଙ୍କ ସହିତ ଉପସ୍ଥିତ ହେଲେ । ସେ ଗୋଟିଏ ଘୋଡ଼ା ଉପରେ ବସିଥିଲେ ଓ କେନେଥଙ୍କପାଇଁ ମଧ୍ୟ ଗୋଟିଏ ଘୋଡ଼ା ଆଣିଥିଲେ । କେନେଥ ନିଜର ଆହତ କୁକୁରଟିକୁ ଗୋଟିଏ ଚୌକିରେ ନିଜ ପାଖରେ ରଖି ଘୋଡ଼ା ଉପରେ ବସିଲେ । ସେତେବେଳେ ସେ ଭାବିଲେ—ବର୍ତ୍ତମାନ ଇଂଲଣ୍ଡରାଜ ରିଗୁର୍ଡ଼ଙ୍କ ସହିତ ମୋର ସବୁ ସମ୍ବନ୍ଧ ତୁଟିଗଲା । ଗୌରବ ଅର୍ଜନ କରି ଏଡିଥଙ୍କୁ ପାଇବାର ଆଶାରେ ଜଳାଞ୍ଜଳି ଦେବାକୁ ପଡ଼ିଲା ।

ହକମ୍ କେନେଥଙ୍କୁ ସାନ୍ତ୍ୱନା ଦେବାକୁ ପୁଣି ଚେଷ୍ଟା କଲେ । ମାତ୍ର ସେ ଚେଷ୍ଟା ବୃଥା ହେଲା । ସାମାନ୍ୟ ବାଲିବନ୍ଧ କି ପ୍ରବଳ ସ୍ରୋତର ଗତି ରୋଧ କରିପାରେ ? କେନେଥଙ୍କ ମନର ପରିବର୍ତ୍ତନପାଇଁ ହକମ୍ ତାଙ୍କର ଗଳ୍ପକଥକକୁ ତାଙ୍କ ପାଖକୁ ପଠାଇ ଦେଲେ । କିନ୍ତୁ କଥକଙ୍କର ଗଳ୍ପ ତାଙ୍କ କାନରେ ପଡ଼ିଲେ ସୁଦ୍ଧା ମନ ଭିତରେ ପଶି ପାରିଲା ନାହିଁ । ଗଳ୍ପ ଶୁଣିଲା ବେଳେ, ତାଙ୍କୁ ଶୁଣା ଯାଉଥିଲା ରିସର୍ଓୟାଲ୍‌ର ବିକଳ ଚିତ୍କାର ।

କେନେଥ ଚିନ୍ତା କଲେ—ଏବେ କେବଳ ମୁଁ ଯେ ବନ୍ଦୀ, ତା ନୁହେଁ । ମୋର ପ୍ରଭୁଭକ୍ତ କୁକୁର ମଧ୍ୟ ମୋ ସଙ୍ଗେ ବନ୍ଦୀ ହେଲା ।

ପ୍ରାତଃକାଳୀନ ପ୍ରାର୍ଥନା ନିମନ୍ତେ ଅଜାନ ଧ୍ୱନି ଶୁଣାଗଲା । ହକମ୍ ଓ ତାଙ୍କ ଅନୁଚରମାନେ ସମବେତ ହୋଇ ଅଲ୍ଲାଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ଏହି ଅବସରରେ କେନେଥ ନିଜ ଖ୍ରୀଷ୍ଟିଆନ ଧର୍ମମତ ଅନୁସାରେ ଏକ ସ୍ୱତନ୍ତ୍ର ସ୍ଥାନରେ ଈଶ୍ୱରଙ୍କୁ ପ୍ରାର୍ଥନା କଲେ । ଏହି ପ୍ରାର୍ଥନା ପରେ ସେ ଟିକିଏ ଶାନ୍ତି ଅନୁଭବ କଲେ ।

ଯିବାବେଳେ କାଳେ କୌଣସି ଅତର୍କିତ ଆକ୍ରମଣ ହେବ ଏହି ଆଶଙ୍କାରେ ଯାତ୍ରୀମାନଙ୍କ ଗୃହ ପାଖେ ଅଶ୍ୱାରୋହୀ ସୈନ୍ୟ ଜଗି ରହି ବୁଲୁଥିଲେ । କିଛି ଦୂର ଯିବା ପରେ ସେମାନଙ୍କ ମଧ୍ୟରୁ ଜଣେ ଆସି ହକମ୍‌ଙ୍କୁ ଗୋପନରେ କିଛି ସମ୍ବାଦ ଦେଲା । ସମସ୍ତେ ଉତ୍କଣ୍ଠିତ ହୋଇ ପଡ଼ିଲେ । କିଛି ଦୂରରେ ଗୋଟିଏ ପ୍ରକାଣ୍ଡ ସଶସ୍ତ୍ର ସୈନ୍ୟଦଳ ଦେଖାଗଲା । ହକମ୍‌ଙ୍କ ସୈନ୍ୟମାନେ ଭୟରେ ଅଭିଭୂତ ହୋଇଗଲେ । ସାର୍ କେନେଥ ହକମଙ୍କୁ କହିଲେ, "ଏହି ଅଶ୍ୱାରୋହୀମାନେ ଖ୍ରୀଷ୍ଟିଆନ ସୈନ୍ୟଦଳ । ବର୍ତ୍ତମାନ ଉଭୟ

ପକ୍ଷରୁ ଶାନ୍ତି ପ୍ରତିଷ୍ଠିତ ଅଛି । ସେମାନଙ୍କୁ ଭୟ କରିବାର କାରଣ ବୁଝି ପାରୁ ନାହିଁ ।"

ହକିମ୍ ଉତ୍ତର କଲେ—"ସତ୍ୟପରାୟଣ ଲୋକେ ଈଶ୍ୱରଙ୍କ ବିନା ଆଉ କାହାରିକୁ ଭୟ କରନ୍ତି ନାହିଁ, ଏ କଥା ଠିକ୍, କିନ୍ତୁ ଦୁଷ୍ଟ ଲୋକଙ୍କଠାରୁ କେବଳ ଅନ୍ୟାୟ ଅତ୍ୟାଚାର ଛଡ଼ା ଆଉ କିଛି ଆଶା କରାଯାଇ ନ ପାରେ । ଏମାନେ ହେଉଛନ୍ତି ଟେମ୍ପଲର ଧର୍ମଯାଜକମାନଙ୍କର ସୈନ୍ୟଦଳ । ସେମାନେ ସଇତାନର ଉପାସକ କହିଲେ ଚଳେ । ସେମାନେ ସତ୍ୟ ଓ ସାଧୁତା କଣ ଜାଣନ୍ତି ନାହିଁ । ଏଇ ଦେଖ, ସେମାନେ ଆମ ସଙ୍ଗେ ଯୁଦ୍ଧ କରିବାକୁ ଉଦ୍ୟତ ହୋଇ ଆସୁଛନ୍ତି । କିନ୍ତୁ ସେମାନେ ପହଞ୍ଚିବା ଆଗରୁ ଆମେ ପଳାଇ ଯାଇ ପାରିବା ।"

ଏହା କହି ସେ ଉଚ୍ଚ ସ୍ୱରରେ ଏକ ସଙ୍କେତ ଦେଲା ମାତ୍ରେ ସୈନ୍ୟମାନେ ବେଗରେ ବିଭିନ୍ନ ଦିଗକୁ ପଳାଇଲେ । ତା ସଙ୍ଗେ ସଙ୍ଗେ ହକିମ୍ ନିଜର ଓ କେନେଥଙ୍କ ଘୋଡ଼ାକୁ ଛୁଟାଇ ଦେଲେ । ଘୋଡ଼ା ଦୁଇଟି ଏପରି ବେଗରେ ଦୌଡ଼ିଲେ ଯେ କେନେଥଙ୍କର ଦମ୍ ତୁଟିଗଲା ପରି ବୋଧ ହେଲା । ଘୋଡାର ବେଗ କମାଇବାକୁ ତାଙ୍କର ଉପାୟ ରହିଲା ନାହିଁ ।

ଏହିପରି ପ୍ରାୟ ଏକ ଘଣ୍ଟା ଯିବା ପରେ ସେମାନେ ଗୋଟିଏ ପୂର୍ବ ପରିଚିତ ସ୍ଥାନରେ ପହଞ୍ଚିଛନ୍ତି ବୋଲି କେନେଥ ଅନୁଭବ କଲେ । ସେ ଘୋଡାମାନଙ୍କର ଅଦ୍ଭୁତ ଶକ୍ତିର ଉଚ୍ଚ ପ୍ରଶଂସା କଲେ । ଏତେ ଦୂର ଦୌଡ଼ିବା ପରେ ମଧ୍ୟ ଘୋଡ଼ାମାନେ ଅଦୌ କ୍ଳାନ୍ତ ହୋଇ ନ ଥିଲେ । କେନେଥ ଟିକିଏ ଭାବି ସ୍ଥିର କଲେ ଯେ ଏଇଟି ହେଉଛି ସ୍ୱୀରିବ ମରୁ କୂପର ନିକଟବର୍ତ୍ତୀ ସ୍ଥାନ । ଏହିଠାରେ ତାଙ୍କର ଶେରକଫଙ୍କ ସହିତ ଦେଖା ହୋଇଥିଲା । ସେ ଦୁହେଁ

ସ୍ତୀରଙ୍କ ମରୁକୂପ ନିକଟରେ ବିଶ୍ରାମ ନେବାକୁ ବସିଲେ । ହକିମ୍ ସାହେବ କହିଲେ ଯେ ଅଳ୍ପ ସମୟ ମଧ୍ୟରେ ତାଙ୍କ ଅନୁଚରମାନେ ସେଠାରେ ଉପସ୍ଥିତ ହେବେ । ସେ କିଛି ଖାଦ୍ୟ ବାହାର କରି କେନେଥଙ୍କୁ ଖାଇବାକୁ କହିଲେ ।

ଉଭୟେ ଖାଇବାକୁ ବସିଲେ । କିନ୍ତୁ କେନେଥ ଚେଷ୍ଟା କରି ସୁଦ୍ଧା କିଛି ଖାଇ ପାରିଲେ ନାହିଁ । ହକିମ୍ ତାଙ୍କୁ ପରୀକ୍ଷା କରି କହିଲେ, "ତୁମ ପକ୍ଷରେ ନିଦ୍ରା ନିତାନ୍ତ ଦରକାର । ମୁଁ ତାର ବ୍ୟବସ୍ଥା କରୁଛି ।" ଏହା କହି ସେ କେନେଥଙ୍କୁ କିଛି ଔଷଧ ଖୁଆଇ ଦେଲେ । ସେତେବେଳକୁ କେନେଥ ଚମଡ଼ାର ଏକ ପୋଷାକ ପିନ୍ଧିଥିଲେ । ସେ ତା ଉପରେ ଖଣ୍ଡିଏ ସୂକ୍ଷ୍ମ ବସ୍ତ୍ର ଆବରଣ କରି ସେହି ତୃଣ ଶଯ୍ୟା ଉପରେ ଶୋଇପଡ଼ିଲେ ।

କେତେ ସମୟ କେନେଥ ଶୋଇଥିଲେ, ତାହା ସେ ନିଜେ ଜାଣିପାରି ନଥିଲେ । କିନ୍ତୁ ନିଦ ଭାଙ୍ଗିଲା ବେଳକୁ ଦେଖାଗଲା, ସେ ତୃଣ ଶଯ୍ୟା ଉପରେ ନାହାନ୍ତି; ଅଛନ୍ତି ବହୁମୂଲ୍ୟର ଏକ ସୁକୋମଳ ଶଯ୍ୟା ଉପରେ । ତାଙ୍କ ଦେହର ବର୍ମ, ଚର୍ମନିର୍ମିତ ପୋଷାକ ଅନ୍ତର୍ହିତ ହୋଇ ଯାଇଛି; ତାର ସ୍ଥାନ ଅଧିକାର କରିଛି ଏକ ସୂକ୍ଷ୍ମ ରେଶମ ପରିଚ୍ଛଦ । ସେ ଚେଇଁଛନ୍ତି କି ସ୍ୱପ୍ନ ଦେଖୁଛନ୍ତି, ତାହା ସ୍ଥିର କରି ପାରିଲେ ନାହିଁ । ତାଙ୍କ ପାଖରେ ଗୋଟିଏ ରୌପ୍ୟ ପାତ୍ରରେ ଥିଲା କିଛି ଶୀତଳ ପାନୀୟ ଓ ଅନ୍ୟ ଗୋଟିଏ ବଡ଼ପାତ୍ରରେ ସ୍ନାନ ନିମନ୍ତେ ଜଳ । କେନେଥ ସ୍ନାନ ସାରି ନିଜର ଚର୍ମ ନିର୍ମିତ ପୋଷାକ ପିନ୍ଧିବାକୁ ଖୋଜିଲେ, ମାତ୍ର ପାଇଲେ ନାହିଁ । ତାଙ୍କର ପରିଧାନ ନିମନ୍ତେ ରଖାଯାଇଥିଲା, ଗୋଟିଏ ବହୁମୂଲ୍ୟର ମୁସଲମାନୀ ପୋଷାକ, ତା ପାଖରେ ଥିଲା ମୁସଲମାନ ସରଦାରଙ୍କର ବ୍ୟବହାର୍ଯ୍ୟ ଖଣ୍ଡା ଓ ଛୁରୀ । ତାଙ୍କ ମନରେ ଏକ ସନ୍ଦେହ ହେଲା । ତାଙ୍କୁ ମୁସଲମାନ

ଧର୍ମରେ ଦୀକ୍ଷିତ କରାଇ ସୁଲ୍ତାନଙ୍କର ଅନୁଗତ କରାଇବା ଅଭିପ୍ରାୟ ନୁହେଁ ତ ! ସେ କଅଣ ନିଜ ଧର୍ମ ଓ ନିଜ ଦେଶ ପ୍ରତି ବିଶ୍ୱାସ-ଘାତକତା କରିବେ ?

କେନେଥଙ୍କୁ ପୁଣି ନିଦ୍ରା ଆସିବାରୁ ସେ ଶୋଇ ପଡ଼ିଲେ । ସ୍ନାନ ପରେ ଗାଢ଼ ନିଦ୍ରାରେ ସେ ଅନେକ ବେଳ ଯାଏ ଅଭିଭୂତ ହୋଇ ରହିଲେ ।

ଏହି ସମୟରେ ହକିମ୍ଙ୍କର ସ୍ୱର ଶୁଣାଗଲା— ମୁଁ କଅଣ ତୁମ ତମ୍ବୁରେ ପ୍ରବେଶ କରିପାରେ ?

ସାର୍ କେନେଥ—ଭୃତ୍ୟର ଘରେ ପ୍ରବେଶ କରିବାପାଇଁ ପ୍ରଭୁ କେବେ ଅନୁମତି ନେଉଁବା ଦରକାର ନ ଥାଏ । ପ୍ରବେଶ ନିଷେଧ କରିବା ଯେ ମୋ ପକ୍ଷରେ ଅସମ୍ଭବ ।

ପୁଣି କେନେଥ ଶୁଣିବାକୁ ପାଇଲେ—"ମୁଁ ତ ତୁମର ପ୍ରଭୁ ଭାବରେ ଆସିନାହିଁ—ଆସିଛି ପୂର୍ବର ସେହି ଶତ୍ରୁ ରୂପରେ । କିନ୍ତୁ ଶତ୍ରୁ ହେଲେହେଁ ମୁଁ ଉଦାର ଓ ନ୍ୟାୟପର ।"

ଏହା କହି ହକିମ୍ ତମ୍ବୁ ମଧ୍ୟରେ ପ୍ରବେଶ କଲେ । କେନେଥ ତାଙ୍କ ମୁହଁକୁ ଚାହିଁଲା କ୍ଷଣି ଚମକି ପଡ଼ିଲେ । ଦେଖିଲେ ତ ତାଙ୍କ ଆଗରେ ଛିଡ଼ା ହୋଇଛନ୍ତି ଶେର୍ କଫ; କିନ୍ତୁ କଣ୍ଠର ସ୍ୱର ଥିଲା ହକିମ୍ଙ୍କର । କେନେଥ ବିସ୍ମୟରେ ଚାରିଆଡ଼କୁ ଚାହିଁ ରହିଲେ, ସତେ ଅବା ସେ ଏକ ଭୂତ ଦେଖୁଛନ୍ତି ।

ଶେର କଫ କେନେଥଙ୍କର ଏହି ବିସ୍ମୟ ଭାବ ଲକ୍ଷ୍ୟ କରି କହିଲେ, "ଜଣେ ସୈନିକ ହେଲେହେଁ ମୁଁ କିପରି ଚିକିତ୍ସା କରୁଥିଲି, ଏଥିରେ ଆଶ୍ଚର୍ଯ୍ୟ ହେଉଛ କାହିଁକି ? ଶତ୍ରୁକୁ କ୍ଷତ ବିକ୍ଷତ କରିବା ଯେପରି ସୈନିକର କର୍ତ୍ତବ୍ୟ, ଅପରର କ୍ଷତ ଆରୋଗ୍ୟ କରି ଜାଣିବା ମଧ୍ୟ ସେହିପରି ତାର କର୍ତ୍ତବ୍ୟ ।"

ଏହାଦ୍ୱାରା କେନେଥଙ୍କର ବିସ୍ମୟ ଦୂର ହେଲା ନାହିଁ । ସେ ପୂର୍ବାପର ଏକ ଦୃଷ୍ଟିରେ ଶେର କଫଙ୍କ ଆଡ଼କୁ ଚାହିଁ ରହିଲେ । ତହୁଁ ଶେର-କଫ କହିଲେ, "ମନୁଷ୍ୟ ବାହାରୁ ଯାହା ଦେଖାଯାଏ, ସେ କଅଣ ପ୍ରକୃତରେ ସେଇଆ ? ଏକଥା ତୁମେ ଅନେକ ଥର ଅନୁଭବ କରି-ଥିବ । ତୁମ ନିଜ ବିଷୟ ଭାବ । ଲୋକେ ତୁମକୁ ଯାହା ମନେ କରନ୍ତି, ତୁମେ କଅଣ ପ୍ରକୃତରେ ତାହା ?"

ଶେଷ କେତେ ପଦ କଥା କେନେଥଙ୍କ ହୃଦୟକୁ ସ୍ପର୍ଶ କଲା । ସେ କହି ଉଠିଲେ, "ହଁ, ଆପଣ ଯାହା କହିଲେ, ତାହା ଖୁବ୍ ଠିକ୍ । ମୋତେ ଅନେକେ ବିଶ୍ୱାସଘାତକ ବୋଲି ମନେ କରନ୍ତି, କିନ୍ତୁ ମୁଁ କେବେ ବିଶ୍ୱାସଘାତକତା କରିଛି ବୋଲି ସ୍ମରଣ ହେଉନାହିଁ । ମୋତେ ଲୋକେ ଭୁଲ ବୁଝୁଛନ୍ତି । ଆପଣଙ୍କ କଥା ଯଥାର୍ଥ ।"

ଶେର କଫ—ମୁଁ ସେ କଥା ଜାଣେ । ଦିନେ ତୁମ ସହିତ ଏକ ସଙ୍ଗରେ ଭୋଜନ କରିଥିଲି । ତେଣୁ ତୁମକୁ ମୃତ୍ୟୁ ମୁଖରୁ ରକ୍ଷା କରିବା ମୋର ଏକ ପ୍ରଧାନ କର୍ତ୍ତବ୍ୟ ଥିଲା । ତୁମେ ଏ ପୋଷାକ ପିନ୍ଧି ଅସ୍ତ୍ର ଶସ୍ତ୍ର ଧାରଣ କର ।

ସାର୍ କେନେଥ—ଏତ ମୋର ଯୋଗ୍ୟ ପୋଷାକ ନୁହେଁ; ଏ ହେଉଛି ଜଣେ ସ୍ୱାଧୀନ ମୁସଲମାନ ସରଦାରର ପୋଷାକ । ମୁଁ ଜଣେ କ୍ରୀତଦାସ ମାତ୍ର । ମୋତେ ସେହିପରି କ୍ରୀତଦାସର ପୋଷାକ ପିନ୍ଧିବାକୁ ଦିଅନ୍ତୁ ।

ଶେର କଫ—ତୁମେ ଭୁଲ ବୁଝିଛ । ତୁମେ ସମ୍ପୂର୍ଣ୍ଣ ସ୍ୱାଧୀନ । ଏହି ପୋଷାକ ପିନ୍ଧ । ଯଦି ତୁମେ ସାଲାଦିନଙ୍କ ଦରବାରକୁ ଯାଅ, ସେଠାରେ ଅନ୍ୟ ପ୍ରକାର ପୋଷାକ ପିନ୍ଧିଥିଲେ ସମସ୍ତଙ୍କ ଦୃଷ୍ଟି ତୁମ ଉପରେ ପଡ଼ିବ ।

ସାର୍ କେନେଥ—ଏଥିରେ 'ଯଦି' ର ପ୍ରଶ୍ନ କାହିଁ ? ଆପଣ ମୋତେ ଯେଉଁଠାକୁ ନେବେ ସେଠାକୁ ଯିବି, ଯାହା କହିବେ ତାହା କରିବି ।

ଶେରକଫ—ତୁମର ଯେଉଁଠାକୁ ଯିବାର ଇଚ୍ଛା ସେଠାକୁ ସ୍ୱଚ୍ଛନ୍ଦରେ ଯାଅ । ତୁମେ ଶତ୍ରୁ—ଶତ୍ରୁ ହେଲେହେଁ ତୁମେ ଉଦାର । ଦିନେ ତୁମେ ମୋତେ ଦ୍ୱନ୍ଦ୍ୱ ଯୁଦ୍ଧରେ ଏଇଠାରେ ପରାସ୍ତ କରିବାକୁ ବସିଥିଲ । ତୁମକୁ କି ମୁଁ ଦାସରୂପେ ରଖିପାରେ ? ତୁମେ ସମ୍ପୂର୍ଣ୍ଣ ସ୍ୱାଧୀନ । ତୁମେ ଯଦି ଧନସମ୍ପତ୍ତି ଲାଭ କରିବା ଉଦ୍ଦେଶ୍ୟରେ ସାଲାଦିନଙ୍କ ସଙ୍ଗେ ଯୋଗ ଦେବାକୁ ଚାହଁ, ତେବେ ତାହା କରି ପାରିବ । କିନ୍ତୁ ମୁଁ ଜାଣେ, ତୁମେ ତା କରିବ ନାହିଁ ।

ସାର୍ କେନେଥ ଶେର କଫଙ୍କୁ ତାଙ୍କ ଉଦାରତା ନିମନ୍ତେ ଧନ୍ୟବାଦ ଦେଲେ, ମାତ୍ର ସେ ସାଲାଦିନଙ୍କ ପାଖେ ନିଜକୁ ବିକି ପାରିବେ ନାହିଁ ବୋଲି ସ୍ପଷ୍ଟ ଜଣାଇ ଦେଲେ ।

ପ୍ରସଙ୍ଗର ଗତି ବଦଳାଇ ଦେଇ ଶେର କଫ କହିଲେ, "ତୁମେ ଦିନେ ଇଂରେଜ ଶିବିରର ମହିଳାମାନଙ୍କୁ ଦେଖିବା କଥା କହୁଥିଲ । ଏଥି ମଧ୍ୟରେ ମୁଁ ସେଠାକୁ ଯାଇ ରିଚାର୍ଡ଼ଙ୍କ ଭଉଣୀ ସୁନ୍ଦରୀ ଏଡ଼ିଥଙ୍କୁ—"

ଶେର କଫ ବାକ୍ୟ ଶେଷ କରିବା ପୂର୍ବରୁ ସାର୍ କେନେଥ କହି ଉଠିଲେ, "ଇଂଲଣ୍ଡ ରାଜାଙ୍କ ଭଉଣୀଙ୍କ ପ୍ରତି ଉପଯୁକ୍ତ ସମ୍ମାନ ଦେଖାଇ କଥା କହନ୍ତୁ ।"

ଶେର କଫ—ଓଃ, ତାଙ୍କ ପ୍ରତି ସମ୍ମାନ ? ଜଗତରେ ଯଦି ମୁଁ କୌଣସି ରମଣୀଙ୍କୁ ସମ୍ମାନ କରୁଥାଏ, ତେବେ ସେ କେବଳ ସାଲାଦିନଙ୍କ ବେଗମ ହିସାବରେ ମୋଠାରୁ ସମ୍ମାନ ପାଇଥାନ୍ତି ।

ସାର୍ କେନେଥଙ୍କର ଧୈର୍ଯ୍ୟ ସୀମା ଲଙ୍ଘି ଆସିଲ । ସେ କ୍ରୋଧରେ ଗର୍ଜି ଉଠି କହିଲେ, "ରଗୃଡ଼୍‌ଙ୍କ ଭଉଣୀଙ୍କର ପାଦର ଧୂଳିକୁ ସ୍ପର୍ଶ କରିବାକୁ ମଧ୍ୟ ସାଲାଦନ ଅଯୋଗ୍ୟ ।"

ଶେର କଫଙ୍କ ମୁଖ ରକ୍ତବର୍ଣ୍ଣ ହୋଇଗଲା; ହାତ ରହିଲା ଅସିର ମୁଷ୍ଟି ଉପରେ । ତାଙ୍କ ମୁହଁରୁ ଏତିକି ଶୁଣାଗଲା, "ତୁମେ କଣ କହୁଛ ?"

ହେଲେ ସାର୍ କେନେଥ କ୍ରୁଦ୍ଧ ରଗୃଡ଼୍‌ଙ୍କ ସମ୍ମୁଖରେ ନିଜର ମତ ପ୍ରକାଶ କରିବାକୁ ଭୟ କରି ନ ଥିଲେ—ସେ କି ଶେର କଫଙ୍କ କ୍ରୋଧ ଦେଖି ଭୟ କରନ୍ତେ ? ସେ କହିଲେ, "ମୁଁ ଯାହା କହିଲି, ତା ଫେରାଇ ନେଇ ପାରିବି ନାହିଁ । ମୋର ସ୍ୱାଧୀନତା ଥିଲେ ମୁଁ ଆପଣଙ୍କୁ ଏଥିପାଇଁ ଦ୍ୱନ୍ଦ୍ୱଯୁଦ୍ଧ କରିବାକୁ ଅହ୍ୱାନ କରିଥାନ୍ତି ।"

ଶେର କଫ ଶାନ୍ତ ଭାବ ଧାରଣ କରି କହିଲେ, "ବର୍ତ୍ତମାନ ତୁମେ ନିଜର ସମ୍ମାନ ବୋଧରେ ଅବଦ୍ଧ । ଅତୀତରେ ଆମ ଦୁହିଁଙ୍କ ଭିତରେ ଥରେ ଯୁଦ୍ଧ ହୋଇଥିଲା । ପୁଣି ଭବିଷ୍ୟତରେ ହୋଇପାରେ । ମାତ୍ର ବର୍ତ୍ତମାନ ଅମେ ପରସ୍ପରର ବନ୍ଧୁ ।"

କିଛି ସମୟ ଯାଏ ଦୁହେଁ ନୀରବ ରହି ଚିନ୍ତା କରିବାକୁ ଲାଗିଲେ ।

ଶେର କଫ କହିଲେ, "ଆସ, ବିଷୟଟା ଉତ୍ତମ ରୂପେ ବିଚାର କରିବା । ମୁଁ ପ୍ରକୃତ କଥା ଜାଣିବାକୁ ଚାହେଁ । ମୁଁ ଦେଖୁଛି, ତୁମେ ରାଜାଙ୍କ ଭଉଣୀଙ୍କୁ ପ୍ରେମ କର ।"

କେନେଥ ଟିକିଏ ରହିଯାଇ କହିଲେ, "ହଁ, ମୁଁ ତାଙ୍କୁ ପ୍ରେମ କରୁଥିଲି—ଯେପରି ମନୁଷ୍ୟ ଭଗବାନଙ୍କୁ ପ୍ରେମ କରେ ସେହିପରି । କିନ୍ତୁ ଏବେ ମୁଁ ତାଙ୍କୁ ପ୍ରେମ କରିବା ପାଇଁ ନିତାନ୍ତ

ଅଯୋଗ୍ୟ । ଆଜ୍ ସେ ବିଷୟ ଉଠାଇ ମୋତେ କଷ୍ଟ ଦିଅନ୍ତୁ ନାହିଁ ।"

ଶେର କଫ—ମୋତେ କ୍ଷମା କରିବ, ମୁଁ ଗୋଟିଏ କଥା ଜାଣିବାକୁ ଚାହେଁ । ତୁମ ଭଳି ଜଣେ ଅଜ୍ଞାତ ଅଶ୍ରୁତ ଦରିଦ୍ର ବ୍ୟକ୍ତି କପର ଇଂଲଣ୍ଡର ରାଜକୁମାରୀଙ୍କ ପ୍ରେମ ଆଶା କଲ, ଏହା ମୋତେ ଆଶ୍ଚର୍ଯ୍ୟ ଲାଗୁଛି ।

କେନେଥ—ଯେଉଁଠାରେ ପ୍ରେମ ଥାଏ, ସେଠାରେ ଆଶା ମଧ୍ୟ ଥାଏ । କିନ୍ତୁ ମୋର ସେ ଆଶା ଏବେ ଚିରଦିନ ପାଇଁ ଲୋପ ପାଇ ଯାଇଛି ।

ଶେର କଫ—ଆଜି ଅବଶ୍ୟ ତୁମେ ସମ୍ମାନ ହରାଇଛ । ତା ନୋହିଥିଲେ ମଧ୍ୟ ସେ ସେହିପରି ରାଜାଙ୍କ ଭଉଣୀ ହୋଇ ରହିଥାନ୍ତେ; ସାଲାଦିନଙ୍କ ବେଗମ ହୋଇ ରହିଥାନ୍ତେ ।

କେନେଥ—ସେ କଥା କହନ୍ତୁ ନାହିଁ । ସାଲାଦିନଙ୍କ ସଙ୍ଗେ ଯୁଦ୍ଧ କ୍ଷେତ୍ରରେ ଭେଟ ମିଳିପାରେ । · ଯୁଦ୍ଧ କ୍ଷେତ୍ରର ପୁରୋଭାଗରେ ତାଙ୍କର ସ୍ଥାନ ।

ଶେର କଫ—ବର୍ତ୍ତମାନ ଆଉ ସେ ବିଷୟ ନେଇ ଚର୍ଚ୍ଚା କରିବା ଦରକାର ନାହିଁ । ପତାକା ଚୋରକୁ ଧରିବାରେ ମୁଁ ତୁମକୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ।

କେନେଥ—ସେ ତ ଆପଣଙ୍କ ପକ୍ଷରେ ମୋ ପ୍ରତି ବିଶେଷ ଅନୁଗ୍ରହର କଥା ହେବ । କଅଣ କରିବାକୁ ହେବ କହନ୍ତୁ । ଆପଣଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନ କରିବି । ଚୋର ଧରା ପଡ଼ିଲା ପରେ ମୋ ଜୀବନ ଗଲେ ମଧ୍ୟ ଚିନ୍ତା ନାହିଁ ।

ଶେର କଫ—ତୁମର କୁକୁରଟି ଏବେ ପୂରା ଆରୋଗ୍ୟ ହୋଇଗଲାଣି । ତାକୁ ଯେଉଁମାନେ ଆକ୍ରମଣ କରିଥିଲେ, ସେମାନଙ୍କୁ ସେ ନିଶ୍ଚୟ ଚିହ୍ନି ପାରିବ ।

କେନେଥ—ଆପଣ ଯାହା କହିଲେ ତା ସତ । କୁକୁରମାନେ ଘ୍ରାଣ ଶକ୍ତି ଦ୍ୱାରା ଶତ୍ରୁକୁ ଚିହ୍ନି ପାରନ୍ତି । ଏଡ଼େ ସାଧାରଣ କଥା ମୋ ମନକୁ ଆସି ନଥିଲା, ବଡ଼ ଆଶ୍ଚର୍ଯ୍ୟର କଥା ।

ଶେର କଫ—ଶିବିରର କେହି କୁକୁରକୁ ଚିହ୍ନି ପାରିବେ ନାହିଁ ?

କେନେଥ—ଅନେକେ ମୋ କୁକୁରକୁ ଚିହ୍ନନ୍ତି, ମୋତେ ମଧ୍ୟ ଚିହ୍ନି ପାରିବେ । ମୋ ସ୍ୱରରୁ ମୁଁ ଚିହ୍ନା ପଡ଼ିଯିବି ।

ଶେର କଫ—ସେଥିପାଇଁ ଚିନ୍ତା କରନା । ମୁଁ ତୁମକୁ ଓ ତୁମ କୁକୁରକୁ ଏପରି ପରିବର୍ତ୍ତନ କରିଦେବି ଯେ କେହି ଚିହ୍ନି ପାରିବେ ନାହିଁ । ତେବେ ତୁମକୁ ଗୋଟିଏ କାର୍ଯ୍ୟ କରିବାକୁ ପଡ଼ିବ । ମୁଁ ସାଲାଦିନଙ୍କର ଖଣ୍ଡିଏ ପତ୍ର ତୁମ ହାତରେ ଦେବି । ସେ ପତ୍ରଟିକୁ ତୁମେ ରାଜାଙ୍କ ଭଉଣୀଙ୍କୁ ଦେବ ।

କେନେଥ କିଛି ଉତ୍ତର ନଦେଇ ନୀରବ ରହିବାରୁ ଶେର କଫ କହିଲେ, "ଚିଠି ନେବାକୁ କଅଣ ତୁମର ଭୟ ହେଉଛି ?"

କେନେଥ—ନାଁ, ଭୟ ହେଉ ନାହିଁ । କିନ୍ତୁ ମୁଁ ଗୋଟିଏ କଥା ଚିନ୍ତା କରୁଛି । ମୋପକ୍ଷରେ ଏପରି ଚିଠି ନେଇ ଯିବା ଦ୍ୱାରା ମୋର ସମ୍ମାନହାନି ହେବ ନାହିଁକି ? ପୁଣି ରାଜାଙ୍କ ଭଉଣୀଙ୍କ ପକ୍ଷରେ ଏପରି ପତ୍ର ଗ୍ରହଣ କରିବାରେ ତାଙ୍କର ସମ୍ମାନ ହାନି ହେବ ନାହିଁକି ?

ଶେର କଫ—ମୁଁ ଶପଥ କରି କହିପାରେ ସାଲଦିନଙ୍କ ପତ୍ରରେ ରାଜଭଉଣୀଙ୍କର ସମ୍ମାନରେ ବାଧା ପଡ଼ିଲା ଭଳି ପଦେ ସୁଦ୍ଧା କିଛି ନାହିଁ ।

କେନେଥ—ବେଶ୍, ତେବେ ମୁଁ ପତ୍ରଟି ନେଇ ଯିବାକୁ ପ୍ରସ୍ତୁତ ଅଛି । କିନ୍ତୁ ପତ୍ରଟି ଦେବାଛଡ଼ା ଅନ୍ୟ କିଛି ସାହାଯ୍ୟ ମୋଠାରୁ ଆଶା କରିବା ଅନୁଚିତ ।

ପାଠକ ଏବେ ବୁଝି ପାରୁଥିବେ, ପୂର୍ବ ପରିଚ୍ଛେଦରେ ବର୍ଣ୍ଣିତ ଜୋହନ୍ ଓ ତାର କୁକୁର ସାର୍ କେନେଥ ଓ ରସ୍‌ୱେଲ୍ ଭିନ୍ନ ଅନ୍ୟ କେହି ନୁହନ୍ତି ।

## ଷୋହଳ : ପତାକାଟେ଼ର କିଏ ?

କାପ୍ତି ଭୃତ୍ୟ କୋହକ ବିଷୟରେ ବେଳେ ବେଳେ ରାଜା ଯାହା କହୁଥିଲେ, ସେଥିରୁ କେନେଥଙ୍କର ଟିକିଏ ଟିକିଏ ସନ୍ଦେହ ହେଉଥିଲା, ରାଜା ତାଙ୍କର ପ୍ରକୃତ ପରିଚୟ ପାଇ ପାରିଛନ୍ତି । ତଥାପି ଶେଷ ପର୍ଯ୍ୟନ୍ତ ନିଜର ଛଦ୍ମବେଶ ରକ୍ଷା କରିବାକୁ କେନେଥ ମନେ ମନେ ସ୍ଥିର କଲେ ।

ଆଜି ରାଜାମାନଙ୍କ ଶିବିରରେ ବିରାଟ ଆୟୋଜନ । ସେଣ୍ଟ ଜର୍ଜ ପାହାଡ଼ ଉପରେ ଇଂଲଣ୍ଡର ପତାକା ଫର୍ ଫର୍ ହୋଇ ଉଡ଼ୁଛି । ଧର୍ମଯୁଦ୍ଧରେ ଯୋଗ ଦେଇଥିବା ବଉଳ ରାଜାଙ୍କ ସୈନ୍ୟ-ମାନେ ସେନାପତିମାନଙ୍କ ସହ ଏହି ପତାକାକୁ ସମ୍ମାନ ଦେଖାଇବେ । ରାଜା ରିଚାର୍ଡ ସମସ୍ତଙ୍କ ଅଭିବାଦନ ଗ୍ରହଣ କରିବେ ।

ଯଥା ସମୟରେ ରାଜାମାନେ ନିଜନିଜର ସୈନ୍ୟ ସହ ଶ୍ରେଣୀବଦ୍ଧ ଭାବରେ ଇଂଲଣ୍ଡର ଜାତୀୟ ପତାକାକୁ ସମ୍ମାନ ଦେଖାଇ ପ୍ରଣାମ କରି ରିଚାର୍ଡଙ୍କ ସମ୍ମୁଖରେ ଗୁଲିବାକୁ ଲାଗିଲେ । ରାଜାଙ୍କ ନିକଟରେ ତାଙ୍କର କାପ୍ରି ଭୃତ୍ୟ କୋହକ ଓ ତାର କୁକୁର ।

ଅଷ୍ଟ୍ରିଆର ଡିଉକ୍ ଲିଓପୋଲଡ଼ ଓ ଟେମ୍ପଲର ମାନଙ୍କ ନେତା ଗ୍ରାଣ୍ଡମାଷ୍ଟର ଯଥାବିଧି ପତାକାକୁ ପ୍ରଣାମ ପୂର୍ବକ ରିଚାର୍ଡଙ୍କୁ ଅଭିବାଦନ କରି ଗୁଲିଗଲେ । କୁକୁରଟି ନୀରବରେ ବସିଥାଏ ।

ରାଜା ନିମ୍ନ ସ୍ୱରରେ କହିଲେ, "ଏ ମୂକ ପଶୁର ଏତେ ବେଳ ଯାଏ କିଛି କୃତିତ୍ୱ ଦେଖାଗଲା ନାହିଁ ।"

ଏହା ପରେ ଆସିଲେ ମନସେର୍‌ଠର ମାର୍କୁଇସ । ତାଙ୍କର ସୈନ୍ୟ ଦୁଇଟି ଦଳରେ ବିଭକ୍ତ ଥିଲେ । ପ୍ରଥମ ଦଳର ନେତା ଥିଲେ କନରେଡଙ୍କ ଭାଇ । ସେ ଦଳଟି ପତାକା ଓ ରାଜାଙ୍କୁ ଯଥାବିଧି ସମ୍ମାନ ଦେଖାଇ ଚାଲିଗଲେ । ତତ୍‌ପରେ ଦ୍ୱିତୀୟ ଦଳ ଆସିଲେ । ଏହି ଦଳର ନେତା ଥିଲେ ନିଜେ ମାର୍କୁଇସ କନରେଡ଼ । ସେ ଏହି ଉତ୍ସବ ଉପଲକ୍ଷେ ବହୁମୂଲ୍ୟ ଚକ୍ ଚକ୍ ପୋଷାକ ପିନ୍ଧିଥିଲେ; ତାଙ୍କର ଘୋଡ଼ାର ସାଜ ମଧ୍ୟ ସେହିପରି ମୂଲ୍ୟବାନ୍ ଥିଲା । ଏଥିପୂର୍ବରୁ କନରେଡ଼ ରାଜାଙ୍କର ଟିକିଏ ପ୍ରୀତିଭାଜନ ହୋଇଥିଲେ । ସେ ପତାକା ନିକଟକୁ ଆସିଲା ମାତ୍ରେ ରାଜା ତାଙ୍କୁ ସାଦର ସମ୍ଭାଷଣ ଜଣାଇଲେ । କନରେଡ଼ ରାଜାଙ୍କୁ ଅଭିବାଦନ କରି କିଛି କହିବାକୁ ଯାଉଛନ୍ତି, ଏହି ସମୟରେ କୁକୁରଟି ଗୁରୁ-ଗର୍ଜନ କରି ଦୌଡ଼ି ଆସିଲା । ସେ କନରେଡ଼ଙ୍କ ଘୋଡ଼ା ଉପରକୁ କୁଦିପଡ଼ି ତାଙ୍କୁ ତଳକୁ ଟାଣି ଆଣିଲା । ଘୋଡ଼ାଟି ଭୟରେ କେଉଁ ଆଡ଼େ ପଳାଇ ଗଲା । କନରେଡ଼ ତଳେ ପଡ଼ି ଗଡ଼ିବାକୁ ଲାଗିଲେ ।

ରାଜା କୋହକକୁ କହିଲେ, "ତୁମର କୁକୁର ଠିକ୍ ଲୋକକୁ ଚିହ୍ନିଛି ବୋଲି ମୋର ବିଶ୍ୱାସ । ଆଗେ କୁକୁରକୁ ନେଇ ଆସ । ନ ହେଲେ ସେ ତାଙ୍କ ଜୀବନ ନେଇଯିବ ।"

କୋହକ ବହୁ କଷ୍ଟରେ କୁକୁରକୁ ଅଟକାଇ କଲା । କନରେଡ଼ଙ୍କୁ ତଳୁ ଉଠାଇ ନେବାକୁ କେତେ ଜଣ ସୈନ୍ୟ ଦୌଡ଼ି ଆସିଲେ । ଆଉ କେତେଜଣ ଚିତ୍କାର କଲେ, "ସେ କାଫ୍ରିକୁ ଆଉ ତା କୁକୁରକୁ କାଟି ଟିକି ଟିକି କରିଦିଅ ।"

ରିଚାର୍ଡ଼ ଉଚ୍ଚ ସ୍ୱରରେ କହିଲେ, "ଯିଏ ମୋର ଭୃତ୍ୟକୁ ବା ତାର କୁକୁରକୁ ଛୁଇଁବ, ତାର ସଙ୍ଗେ ସଙ୍ଗେ ମୃତ୍ୟୁ ହେବ ଏବଂ ତାର ମୃତ୍ୟୁ ହେବ ଏହିଠାରେ, ମୋ ନିଜ ହାତରେ ।"

କନରେଡ଼ ଏତେ ଲୋକଙ୍କ ଆଗରେ ଲଜ୍ଜିତ ହୋଇ ରାଗରେ କହିଲେ, "ମୋର ଅପରାଧ କଅଣ ? ଇଂଲଣ୍ଡ ସହିତ ଆମେ ଯେଉଁ ଶାନ୍ତି ସ୍ଥାପନ କଲୁ, ଏଇ କଣ ତାର ଫଳ ?"

ରଗୁର୍ଡ ଉତ୍ତର ଦେଲେ, 'ଏହି ସାମାନ୍ୟ କୁକୁର ତୁମ ବିରୁଦ୍ଧରେ ଯେଉଁ ଅଭିଯୋଗ କରୁଛି, ସାହସ ଥିଲେ ତା ଅସ୍ୱୀକାର କର ।"

କନରେଡ଼ ହଠାତ୍ କହି ପକାଇଲେ, "ମୁଁ କେବେହେଲେ ପତାକାକୁ ଛୁଇଁ ନାହିଁ ।"

ରଗୁର୍ଡ଼—ତୁମର କଥାରୁହିଁ ତୁମର ଅପରାଧ ଜଣା ପଡ଼ୁଛି । ତୁମେ ଇଂଲଣ୍ଡର ପତାକା ଗୌରବ କରିଥିଲ ବୋଲି କେହି କହିଥିଲ ?

କନରେଡ଼ କ୍ରୁଦ୍ଧ ସ୍ୱରରେ କହି ଉଠିଲେ, "ଏଇ ପତାକା ଗୌରବ ଛଡ଼ା ଅଉ କଅଣ ହୋଇପାରେ ? ସାମାନ୍ୟ ପତାକାଟା ଗୌରବଗଲା ବୋଲି ତ ଆପଣ ଏ ଶିବିରରେ ପ୍ରକାଣ୍ଡ ଗୋଳମାଳ ଲଗାଇଛନ୍ତି । ଆପଣ ଏବେ ଗୋଟାଏ କୁକୁରର ବ୍ୟବହାର ଦେଖି ଜଣେ ରାଜା ଉପରେ ସେହି ଅପରାଧ ଲଦି ଦେଇ ଅପମାନିତ କରୁଛନ୍ତି ।"

ଏଥି ମଧ୍ୟରେ ସୈନ୍ୟମାନେ ଉତ୍ତ୍ୟକ୍ତ ହୋଇ କେତେକେ ରଗୁର୍ଡ଼ଙ୍କ ପକ୍ଷରେ ଆଉ କେତେକେ ତାଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ବାହାରି ପଡ଼ିଲେ । ଅବସ୍ଥା ଅସମ୍ଭାଳ ହେବାର ଦେଖି ଫ୍ରାନସର ରାଜା ଫିଲିପ ଉଭୟ ପକ୍ଷକୁ ଶାନ୍ତ କରିବା ଉଦ୍ଦେଶ୍ୟରେ କହିଲେ, "ବର୍ତ୍ତମାନ ରାଜାମାନେ ସୈନ୍ୟ ସହ ନିଜ ନିଜ ଶିବିରକୁ ଚାଲି ଯାଆନ୍ତୁ । ଘଣ୍ଟାକ ପରେ ରାଜାମାନଙ୍କ ସମ୍ମିଳିତ ପରିଷଦରେ ଏ ବିଷୟର ଆଲୋଚନା ହେବ ।"

ଯଥା ସମୟରେ ସମ୍ମିଳନୀ ବସିଲ । କନରେଡ଼ ପୁନର୍ବାର ରାଜକୀୟ ପୋଷାକ ପିନ୍ଧି ସଭାକୁ ଆସିଲେ । ସଭାରେ ବହୁ ସମୟ ଯାଏ ତର୍କ ବିତର୍କ ଚାଲିଲା । ବର୍ଗ୍ରେଡ ନାର୍ଭିକ ଭାବରେ ଅଭିଯୋଗ କଲେ ଯେ କନରେଡ଼ ପତାକା ଗ୍ରେର କର କୁକୁରକୁ ଅସ୍ତ୍ରଦ୍ୱାରା ଆହତ କରିଅଛନ୍ତି । କନରେଡ଼ ଶପଥ କରି କହିଲେ ଯେ ସେ ଏ ବିଷୟରେ କିଛି ହେଲେ ଜାଣି ନାହାନ୍ତି ।

ଫିଲିପ ରଗ୍ରେର୍ଡ଼ଙ୍କୁ ସମ୍ବୋଧନ କରି କହିଲେ, "ଗୋଟାଏ କୁକୁର ଅପେକ୍ଷା ଜଣେ ରାଜାଙ୍କର କଥା ଅଧିକ ବିଶ୍ୱାସଯୋଗ୍ୟ ।" ବର୍ଗ୍ରେଡ଼ ଉତ୍ତର କଲେ, "କୁକୁର ତାର ଶତ୍ରୁକୁ ଓ ମିତ୍ରକୁ ଚିହ୍ନିବାରେ କେବେ ଭୁଲ କରି ନ ପାରେ । ମାର୍କୁଇସ ଛଦ୍ମବେଶ ଧାରଣ କଲେ ମଧ୍ୟ ସେ ତାଙ୍କୁ ଚିହ୍ନି ପାରିବ ।"

ଫିଲିପ ପ୍ରଶ୍ନକଲେ, "ତେବେ ଏ ସମସ୍ୟାର ସମାଧାନ କିପରି ହେବ ?"

ରଗ୍ରେଡ଼ ଉତ୍ତର କଲେ, "ଇଉରୋପର ସଭ୍ୟ ଦେଶମାନଙ୍କରେ ପ୍ରଥା ଅଛି ଯେ ଏପରି ସ୍ଥଳରେ ଅଭିଯୁକ୍ତ ବ୍ୟକ୍ତି ଦ୍ୱନ୍ଦ୍ୱଯୁଦ୍ଧରେ ଅବତୀର୍ଣ୍ଣ ହୋଇ ନିଜର ନିର୍ଦ୍ଦୋଷତାର ପ୍ରମାଣ ଦେବାକୁ ହେବ । ଯେବେ କନରେଡ଼ ନିର୍ଦ୍ଦୋଷ, ସେ ଦ୍ୱନ୍ଦ୍ୱ ଯୁଦ୍ଧ କରନ୍ତୁ । ତାଙ୍କୁ ମୋ ସଙ୍ଗେ ଯୁଦ୍ଧକରିବାକୁ ହେବ ।"

କିନ୍ତୁ କନରେଡ଼ ଦ୍ୱନ୍ଦ୍ୱ ଯୁଦ୍ଧ କରିବାକୁ ଅନିଚ୍ଛୁକ । ତାର ପ୍ରକୃତ କାରଣ ହେଲା, ବର୍ଗ୍ରେର୍ଡ଼ଙ୍କ ଭଳି ବୀର ସଙ୍ଗେ ଦ୍ୱନ୍ଦ୍ୱ ଯୁଦ୍ଧ କରିବାକୁ ତାଙ୍କର ସାହସ ନଥିଲା ।

ଫିଲିପ କହିଲେ—ରାଜା ରଗ୍ରେଡ଼ ଏ ଧର୍ମ ଯୁଦ୍ଧର ସର୍ବାଧିନାୟକ । ସେ ନିଜେ ଦ୍ୱନ୍ଦ୍ୱଯୁଦ୍ଧରେ ଅବତୀର୍ଣ୍ଣ ହେବା ଅନୁଚିତ । ଜଣେ କେହି ତାଙ୍କର ପ୍ରତିନିଧି ରୂପେ ଯୁଦ୍ଧ କରିପାରେ ।

ଅଧିକାଂଶ ରାଜା ଏହି ମତର ସମର୍ଥନ କଲେ । ତେଣୁ ସାଲିସବରୀର ଅର୍ଲ୍ ରିଚାର୍ଡ୍‌ଙ୍କର ପ୍ରତିନିଧିରୂପେ ଯୁଦ୍ଧ କରିବାକୁ ବାହାରିଲେ ।

କନରେଡ୍ ଏହି ସୁଯୋଗରେ କହିଲେ, "ରିଚାର୍ଡ୍ ହେଉଛନ୍ତି ଏ ଧର୍ମଯୁଦ୍ଧର ସର୍ବାଧିନାୟକ । ତେଣୁ ତାଙ୍କ ସହିତ ମୁଁ ଦ୍ୱନ୍ଦ୍ୱଯୁଦ୍ଧ କରି ପାରିବି ନାହିଁ । କିନ୍ତୁ ସାଲିସବରୀର ଅର୍ଲ୍ ବା ରାଜା ରିଚାର୍ଡ୍‌ଙ୍କ ପକ୍ଷର ଅନ୍ୟ ଯେ କୌଣସି ଲୋକ ସହିତ ଯୁଦ୍ଧ କରିବାକୁ ମୁଁ ପ୍ରସ୍ତୁତ ।"

ଟାମ୍ପ୍ଲାରର ବିଶପ୍ କହିଲେ, "ମାର୍କୁଇସ କନରେଡ୍‌ଙ୍କ ପ୍ରସ୍ତାବ ଖୁବ୍ ଯୁକ୍ତିଯୁକ୍ତ । ଆଉ ତର୍କ ବିତର୍କ ଅନାବଶ୍ୟକ ।"

ଶେଷରେ ସ୍ଥିର ହେଲା, କନରେଡ୍‌ଙ୍କ ସହିତ ଦ୍ୱନ୍ଦ୍ୱ ଯୁଦ୍ଧ କରିବା ପାଇଁ ରାଜା ରିଚାର୍ଡ୍ ନିଜର ପ୍ରତିନିଧି ନିର୍ବାଚନ କରିବେ । ରାଜାମାନଙ୍କ ଶିବିର ନିକଟରେ ଏହି ଦ୍ୱନ୍ଦ୍ୱ ଯୁଦ୍ଧ ହେଲେ ସୈନ୍ୟ-ମାନଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟି ହୋଇପାରେ । ତେଣୁ ସୁଲତାନ ସାଲାଦିନଙ୍କୁ ଅନୁରୋଧ କରାଯିବ, ସେ ଦ୍ୱନ୍ଦ୍ୱ ଯୁଦ୍ଧ ନିମନ୍ତେ ଗୋଟିଏ ସ୍ଥାନ ସ୍ଥିର କରିଦେବେ ।

ସାଲାଦିନଙ୍କୁ ଉକ୍ତ ଅନୁରୋଧ ଜଣାଇ ଜୋହାଙ୍କ ହସ୍ତରେ ପତ୍ର ପଠାଇବା ସ୍ଥିର ହେଲା ।

## ସତର : ସାଲଦନଙ୍କ ପତ୍ର

ବର୍ଗଣ୍ଡ୍ ଅପଣା ତମ୍ବୁକୁ ଫେରିଆସି କୋହକଙ୍କୁ କହିଲେ, "ତୁମ ଯୋଗ୍ୟ ଶତ୍ରୁର ସନ୍ଧାନ ମିଳିଲା । ଏବେ ତା ସଙ୍ଗେ ଦ୍ୱନ୍ଦ୍ୱ ଯୁଦ୍ଧ କରିବାକୁ ହେବ । ମୁଁ ନିଜେ ଯୁଦ୍ଧ କରିଥାନ୍ତି; କିନ୍ତୁ ତା ଡାହାରି ଇଚ୍ଛା ନୁହେଁ । ଏହି ଯୁଦ୍ଧ ପାଇଁ ଗୋଟିଏ ଉପଯୁକ୍ତ ସ୍ଥାନ ଦେବାପାଇଁ ସାଲଦନଙ୍କୁ ପତ୍ର ଲେଖାଯାଉଛି ଓ ତୁମେ ସେ ପତ୍ରଟି ନେଇ ଯିବ । ସେଠାରେ ତୁମେ ସ୍କଟଲଣ୍ଡର ଜଣେ ନାଇଟଙ୍କୁ ଦେଖି ପାରିବ । ସତ୍ୟ ଓ ନ୍ୟାୟର ରକ୍ଷା ପାଇଁ ସେ ମୋର ପ୍ରତିନିଧି ରୂପେ ଯୁଦ୍ଧ କରିବାକୁ ତାଙ୍କୁ ମୋର ନିମନ୍ତ୍ରଣ ଜଣାଇବ ।"

କୋହକ ଅଙ୍ଗ ଭଙ୍ଗୀ ଦ୍ୱାରା ସ୍ୱୀକୃତ ଜଣାଇବାରୁ ରାଜା ପୁଣି କହିଲେ, "ତୁମର ଏଡ଼ଥଙ୍କ ସଙ୍ଗେ ଦେଖା ହୋଇଛି କି ? ଯଦି ଦେଖି ନ ଥାଅ, ତେବେ ସାଲଦନଙ୍କ ପତ୍ର ଦେଲାବେଳେ ନିଶ୍ଚୟ ତାଙ୍କୁ ଦେଖିପାରିବ । କିନ୍ତୁ ସାବଧାନ, ତାଙ୍କୁ ପଦେ ହେଲେ କିଛି କହିବ ନାହିଁ ।"

କୋହକ ରାଜାଙ୍କ ଆଦେଶ ଅନୁସାରେ କାର୍ଯ୍ୟ କରିବ ବୋଲି ସଙ୍କେତ ଦ୍ୱାରା ଜଣାଇ ଦେଲା । ରାଜା ସାର୍ ନେଭିଲଙ୍କୁ ଡାକି କହିଲେ, "ଏହି ଭୃତ୍ୟକୁ ଏଡିଥଙ୍କ ତମ୍ବୁକୁ ନେଇଯାଅ । ସେ ଏ ସ୍ଥାନ ସହିତ ପରିଚିତ ଥିଲା ପରି ମନେ ହେଉଛି । ତଥାପି ତାକୁ ବାଟ ଦେଖାଇ ଦେବ ।"

କୋହକ ମନେ ମନେ ଚିନ୍ତାକଲା, "ମୁଁ ଯେ ଛଦ୍ମବେଶୀ ସାର୍ କେନେଥ, ତାହା ବୋଧହୁଏ ରାଜା ଜାଣି ସାରି ଅଛନ୍ତି । ତା

ନୋହିଲେ ସେ କାହିଁକି ଏଡଥଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ମୋତେ ନିଷେଧ କରିଥାନ୍ତେ । ମୂକ ଲୋକ ଯେ କଥା କହିପାରେ ନାହିଁ, ତାହା କଣ ସେ ଜାଣନ୍ତି ନାହିଁ ? କିନ୍ତୁ ତାଙ୍କର ମୋ ପ୍ରତି କୋଧ ବା ବିରକ୍ତିର କିଛି ଲକ୍ଷଣ ଦେଖାଯାଉନାହିଁ । ବର୍ତ୍ତମାନ ରାଜାଙ୍କ ପ୍ରତିନିଧି ଭାବରେ ଦ୍ୱନ୍ଦ୍ୱଯୁଦ୍ଧ କରିବାର ଅପୂର୍ବ ସୁଯୋଗ ମିଳିଛି । କିନ୍ତୁ ଏଡଥଙ୍କୁ ସାଲଦ୍ଧାନଙ୍କ ପତ୍ର ଦେବାର ଭାର ସେ ମୋତେ କାହିଁକି ଦେଲେ । ତେବେ ସେ ନିଶ୍ଚୟ ଉଦାରତା ପ୍ରକାଶ କରି ମୋତେ କ୍ଷମା କରିଛନ୍ତି । ତେଣୁ ତାଙ୍କ ଆଦେଶ ପାଳନ କରିବା ମୋର କର୍ତ୍ତବ୍ୟ ।

ଏଡଥଙ୍କ ତମ୍ବୁ ନିକଟରେ ପହଞ୍ଚିବାକୁ ସାର୍ କେନେଥ୍ ବାହାରେ ରହିଲେ । କୋହକ୍ ଜାନୁପାତ ପୂର୍ବକ ଏଡଥଙ୍କୁ ସମ୍ମାନ ପ୍ରଦର୍ଶନ କଲେ । ନିଜର କ୍ଷୁଦ୍ରକାୟ କାଫ୍ରି ବେଶ କଥା ସ୍ମରଣ କରି ସେ ମନେ ମନେ ଲଜ୍ଜା ଅନୁଭବ କରୁଥାନ୍ତି । ଏଡିଥ ଦୀପାଲୋକରେ ତାଙ୍କ ମୁହଁକୁ ଉତ୍ତମରୂପେ ନିରୀକ୍ଷଣ କରି କହିଲେ, "ସ୍କଟଲାଣ୍ଡର ବୀର ନାଇଟ୍, ଶତ୍ରୁ ବିପଦରେ ଅଚ୍ଛନ୍ନ ଛଦ୍ମବେଶୀ ନାଇଟ୍ ।"

କେନେଥ କିଛି ଉତ୍ତର ଦେବାକୁ ଯାଉଥିଲେ; କିନ୍ତୁ ରାଜାଙ୍କ ଆଦେଶ ମନେ ପକାଇ ନୀରବରେ ମସ୍ତକ ନୁଆଁଇ ଦେଲେ ।

ଏଡିଥ ପୁଣି କହିଲେ, "ତୁମେ ସୈନ୍ୟ ପ୍ରଦର୍ଶନ ବେଳେ ରାଜାଙ୍କ ପାଖେ ଥିଲ; ସେତେବେଳେ ମୁଁ ତୁମକୁ ଓ ତୁମର କୁକୁରକୁ ଚିହ୍ନିଥିଲି । ଏଠାରେ ମୋତେ କଥା କହିବାରେ ଭୟର କିଛି କାରଣ ନାହିଁ ।" ତଥାପି କେନେଥ ନୀରବ । ଏଡିଥ ବିରକ୍ତ ହୋଇ କହିଲେ, "ତୁମେ ମୂକ ବୋଲି ଅଭିନୟ କଲେ ମୁଁ ମଧ୍ୟ ସେହିପରି ମୂକ ରହିବି ।"

କେନେଥ ଅଙ୍ଗଭଙ୍ଗୀଦ୍ୱାରା ନିଜର ଗମ୍ଭୀର ଦୁଃଖ ପ୍ରକାଶ କରି ସାଲଦାନଙ୍କ ପତ୍ରଟି ବଢ଼ାଇ ଦେଲେ ।,ଏଡଥ୍ ପତ୍ରଟିକୁ ନ ପଢ଼ି ତାହା ତଳେ ପକାଇଦେଇ ପଗ୍ଭରିଲେ, "କଅଣ, ଏବେ ସୁଦ୍ଧା ମୋତେ କଥା କହିବ ନାହିଁ ? ମୁଁ ପ୍ଲାଣ୍ଟାଜେନେଟ ରାଜପରିବାରରେ ଜନ୍ମ । ତୁମକୁ ମୁଁ ଏତେ କହିଲେ ସୁଦ୍ଧା ତୁମେ ପଦେ କଥା କହିଲ ନାହିଁ । ତୁମକୁ କହିବା ମୋର ଭୁଲ । ତା ଦ୍ୱାରା ମୁଁ ନିଜକୁ ଓ ମୋର କୁଳକୁ ଅପମାନିତ କରୁଛି । ଯାଅ, ଆଉ ତୁମର ଏଠାରେ ରହିବା ଆବଶ୍ୟକ ନାହିଁ ।"

ଜୋହାକ୍ ବିକଳ ନେତ୍ରରେ ପତ୍ରଟି ଆଡ଼କୁ ଗ୍ଭହିଁବାରୁ ଏଡଥ କହିଲେ, "ଓଃ, ଭୁଲି ଯାଇଥିଲି; ପତ୍ରର ଗୋଟାଏ ଉତ୍ତର ଦେବାକୁ ହେବ ।" ଏହା କହି ସେ ପତ୍ର ପାଠ କରି ହସିଉଠିଲେ ।

କିଛି ସମୟ ପରେ ସେ କହିଲେ, "ବେଶ୍ ମଜା କଥା ତ ! ସ୍କଟଲଣ୍ଡର ଜଣେ ନାଇଟ ସାଲଦାନଙ୍କ ପାଖେ କ୍ରୀତଦାସ ହୋଇ ରହିଛି । ସେ ପୁଣି ଇଂଲଣ୍ଡର ରାଜାଙ୍କ ଭଉଣୀ ସଙ୍ଗେ ସେହି ମୁସଲମାନ ସୁଲତାନର ବିବାହ ପ୍ରସ୍ତାବ ନେଇ ଆସିଛି । ଯାଅ, ଯାହା ଦେଖିଲ ତୁମର ପ୍ରଭୁଙ୍କୁ କହିଦେବ ।" ଏହା କହି ସେ ପତ୍ରଟିକୁ ପାଦତଳେ ଦଳିଦେଲେ ।

ପୁଣି ସେ କହିଲେ, "ତୁମର ପ୍ରଭୁଙ୍କୁ କହିବ—ପ୍ଲାଣ୍ଟାଜେନେଟ ବଂଶର ଏଡଥ ସାଲଦାନକୁ କେବେ ବିବାହ କରି ନ ପାରେ । ଆଉ ତୁମକୁ ମୁଁ କପଟ ଘୃଣାକରେ ତା ପ୍ରକାଶ କରିବାର ଭାଷା ନାହିଁ । ତୁମେ ଯେ ଧର୍ମଯୁଦ୍ଧ କରିବାକୁ ଆସିଥିଲ ତା କଅଣ ଏକବାରେ ଭୁଲିଗଲ ?"

ଗମ୍ଭୀର ଦୁଃଖ, ଲଜ୍ଜା ଓ ଅପମାନରେ କେନେଥ ରାଜାଙ୍କ ତମ୍ବୁକୁ ଗ୍ଭଲିଆସିଲେ । ଏଥିମଧ୍ୟରେ ଡଭକ୍ସ ଫେରି ଆସିଥିଲେ । ରାଜା ଓ ଡଭକ୍ସଙ୍କ ଭିତରେ ଅନେକ ବେଳଯାଏ ମନ୍ତ୍ରଣା ଗ୍ଭଲିଲା ।

ଏହାପରେ ରାଜା ଏଡଥଙ୍କ ପାଖକୁ ଯାଇ କହିଲେ, "ମୁଁ ଏବେ ସୁଲତାନଙ୍କୁ କି ଉତ୍ତର ଦେବି କହ ? ବର୍ତ୍ତମାନ ଯେଉଁ ଘଟନା ଘଟିଗଲା, ସେଥିରେ ମୋର ବନ୍ଧୁମାନେ ମୋତେ ଛାଡ଼ି ଚାଲିଯିବାର ଉଦ୍ୟମ କରୁଛନ୍ତି । ସୁଲତାନଙ୍କ ସଙ୍ଗେ ଯୁଦ୍ଧ କରି କିଛି ଲାଭର ଆଶା ଆଦୌ ନାହିଁ; ବରଂ ସନ୍ଧି କଲେ କିଛି ଲାଭ ହେବ । ସେହି ସନ୍ଧି ପାଇଁ ତୁମର ସାହାଯ୍ୟ ଆବଶ୍ୟକ । ସୁଲତାନଙ୍କୁ କି ଉତ୍ତର ଦେବି ?"

ଏଡଥ—ପ୍ଲାଣ୍ଟାଜେନେଟ କୁଳର ଦରିଦ୍ରତମ ରମଣୀ ମଧ୍ୟ ବରଂ ଜଣେ ଦରିଦ୍ର ଖ୍ରୀଷ୍ଟିଆନକୁ ବିବାହ କରିବ, କିନ୍ତୁ ବିଧର୍ମୀ ରାଜାକୁ ବିବାହ କରିବ ନାହିଁ—ଏକଥା ସୁଲତାନଙ୍କୁ ଜଣାଇଦିଅ । ମୁଁ ବୁଝୁଛି, କେବଳ ରାଜନୈତିକ ସୁବିଧା ହାସଲ କରିବାପାଇଁ ତୁମେ ମୋତେ ଏ ବିବାହ କଥା କହୁଛ ।

ରିଚାର୍ଡ଼—ସାଲ୍ଦାନଙ୍କୁ ବିବାହ କରିବାପାଇଁ ମୁଁ ତୁମକୁ ବାଧ୍ୟ କରୁନାହିଁ । ଏନ୍‌ଗାଜୀର ସନ୍ନ୍ୟାସୀ ଜ୍ୟୋତିଷ ବିଦ୍ୟା ବଳରେ ଜାଣିପାରିଛନ୍ତି, ତୁମର ବିବାହଦ୍ୱାରା ମୋର ଜଣେ ଶକ୍ତିଶାଳୀ ଶତ୍ରୁ ସହିତ ବନ୍ଧୁତ୍ୱ ପ୍ରତିଷ୍ଠିତ ହେବ । ଅଧିକନ୍ତୁ ସେ କହିଛନ୍ତି, ତୁମର ସ୍ୱାମୀ ଜଣେ ଖ୍ରୀଷ୍ଟିଆନ ହେବେ । ଏଥିରୁ ଆଶା କରାଯାଏ, ସାଲ୍ଦାନ ଖ୍ରୀଷ୍ଟିଆନ ଧର୍ମ ଗ୍ରହଣ କରିବେ । ଏଥିପାଇଁ ତୁମକୁ ସ୍ୱାର୍ଥ ବଳି ଦେବାକୁ ପଡ଼ିବ ।

ଏଡଥ ଉତ୍ତେଜିତ ସ୍ୱରରେ କହିଲେ, "ଲୋକେ ଛେଳି ମେଣ୍ଢା ବଳି ଦେଇଥାନ୍ତି । ନିଜର ସମ୍ମାନକୁ, ନିଜର ଧର୍ମକୁ କେହି ବଳି ଦିଏ ନାହିଁ ।"

ବର୍ଗୃର୍ଡ ଟିକିଏ ଚିନ୍ତା କରି କହିଲେ, "ଏଡ଼ଥ, ମୁଁ ତୁମ ସଙ୍ଗେ ଯୁକ୍ତି କରିବାକୁ ଆସିନାହିଁ କି ମୋ ମତ କାହା ଉପରେ ଲଦିଦେବାକୁ ଆସିନାହିଁ । ମୁଁ ନିଶ୍ଚୟ ତୁମର ଉତ୍ତର ସାଲ୍ବଦନ୍‌ଙ୍କୁ ଜଣାଇ ଦେବି । କିନ୍ତୁ ମୋ ମତରେ ତୁମେ ତାଙ୍କୁ ଦେଖିବାଯାଏ ଅପେକ୍ଷା କର । ସମସ୍ତେ ତାଙ୍କୁ ସୁପୁରୁଷ ବୋଲି ସ୍ୱୀକାର କରନ୍ତି ।"

ଏଡଥ—ମୁଁ କଦାପି ତାଙ୍କୁ ଗ୍ରହିବି ନାହିଁ ।

ବର୍ଗୃର୍ଡ—ଅବଶ୍ୟ ତାଙ୍କୁ ଦେଖିବାକୁ ହେବ । ଦ୍ୱନ୍ଦ୍ୱ ଯୁଦ୍ଧ ପାଇଁ ସ୍ଥାନ ଦେବାକୁ ତାଙ୍କୁ ଅନୁରୋଧ କରାଯାଇଛି । ସେ ଏହି ଦ୍ୱନ୍ଦ୍ୱ ଯୁଦ୍ଧର ଫଳାଫଳ ଦେଖିବାକୁ ଆସିବେ । ରାଣୀ ଏହି ଯୁଦ୍ଧ ଦେଖିବାକୁ ଯିବେ ବୋଲି କହିଛନ୍ତି । ତୁମେ ନିଶ୍ଚେ ତାଙ୍କ ସାଥିରେ ଯିବ । ତାଙ୍କୁ ନ ଦେଖିବ କିପରି ?

ରାଜା ତମ୍ବୁକୁ ଆସି ସାଲ୍ବଦନଙ୍କ ପାଖକୁ ପତ୍ର ଲେଖିଲେ । ପ୍ରାତଃକାଳରୁ ପତ୍ର ନେଇ ସାଲ୍ବଦନଙ୍କ ନିକଟକୁ ଯିବା ନିମନ୍ତେ କାଫ୍ରି ଭୃତ୍ୟକୁ ଆଦେଶ ଦିଆଗଲା ।

## ଅଠର : ରିଚାର୍ଡ଼ ଓ ସୁଲତାନ

ପରଦିନ ପ୍ରାତଃକାଳରେ ଫ୍ରାନ୍‌ସର ରାଜା ସ୍ପଷ୍ଟ ଭାବରେ ରିଚାର୍ଡ଼ଙ୍କୁ ଜଣାଇ ଦେଲେ ଯେ ପାଲେଷ୍ଟାଇନରେ ଆଉ ବୃଥା ସମୟ ନଷ୍ଟ ନ କରି ସେ ସ୍ୱଦେଶକୁ ଫେରିଯାଉଅଛନ୍ତି । ଅଷ୍ଟ୍ରିଆର ଡିଉକ୍ ଓ ଅନ୍ୟ କେତେକ ରାଜା ଆସି ଠିକ୍ ସେହି ଉଦ୍ଦେଶ୍ୟ ଜଣାଇଲେ । ଅନ୍ୟ ରାଜାମାନଙ୍କ ସାହାଯ୍ୟ ବିନା ଆଉ ଧର୍ମଯୁଦ୍ଧ ଚାଲି ନ ପାରେ, ଏହା ଚିନ୍ତା କରି ରିଚାର୍ଡ଼ ହତାଶ ହୋଇ ପଡ଼ିଲେ । ସେ ଯେତିକି ଚିନ୍ତା କଲେ, ସେତିକି ତାଙ୍କର ଧାରଣା ଜନ୍ମିଲା ଯେ ନିଜର ଉଦ୍ଧତ ସ୍ୱଭାବ ଯୋଗୁ ଏ ଧର୍ମଯୁଦ୍ଧର ଏପରି ପରିଣତି ହେଲା ।

ସେ ଏହିପରି ଚିନ୍ତା କରୁଥିବା ବେଳେ ଜଣେ ଭୃତ୍ୟ ଆସି ସମ୍ବାଦ ଦେଲା, ସାଲାଦିନ ଦ୍ୱନ୍ଦ୍ୱ ଯୁଦ୍ଧ ପାଇଁ ହୀରକ ମରୁକୂପ ନିକଟବର୍ତ୍ତୀ ପ୍ରାନ୍ତରରେ ସମସ୍ତ ବ୍ୟବସ୍ଥା କରି ଅଛନ୍ତି । ଏହି ସ୍ଥାନଟି ଖ୍ରୀଷ୍ଟିଆନ ଓ ମୁସଲମାନ ଶିବିରର ଠିକ୍ ମଧ୍ୟ ସ୍ଥାନରେ ଅବସ୍ଥିତ । ଯେଉଁ-ମାନେ କେବଳ ଦର୍ଶକ ଭାବରେ ଯିବେ ସେମାନେ ନିରସ୍ତ୍ର ହୋଇ ସ୍ୱତନ୍ତ୍ର ଆସନରେ ବସିବେ । ରିଚାର୍ଡ଼ ଓ କନରେଡ଼ ପ୍ରତ୍ୟେକେ ଶହେ ଜଣ ଲେଖାଏଁ ସଶସ୍ତ୍ର ଅନୁଚର ନେଇ ପାରିବେ । ସାଲାଦିନ ନିଜେ ପାଞ୍ଚଶହ ସୈନିକ ସହ ଶାନ୍ତିରକ୍ଷାର ବନ୍ଦୋବସ୍ତ କରିବେ ।

ସମ୍ବାଦ ପାଇଲାମାତ୍ରେ ରିଚାର୍ଡ଼ ସବୁ ଦୁଶ୍ଚିନ୍ତା ଭୁଲିଗଲେ । ତାଙ୍କ ମନରେ ଦ୍ୱନ୍ଦ୍ୱଯୁଦ୍ଧ ଛଡ଼ା ଆଉ କିଛି ସ୍ଥାନ ପାଇଲା ନାହିଁ ।

ଦ୍ୱିନ୍ଦ୍ୱ ଯୁଦ୍ଧର ପ୍ରବର୍ତ୍ତନ ଜନରେଲ୍ ତାଙ୍କର ଏକଶତ ସୈନ୍ୟ ସହିତ ମଲ୍ଲକୂପ ଉଦ୍ଦେଶ୍ୟରେ ଚାଲିଲେ । ରଣ୍‌ଜିତ୍ ଓ ତାଙ୍କର ଲୋକେ ଅନ୍ୟ ଏକ ପଥରେ ଯାଇ ସେଠାରେ ଉପସ୍ଥିତ ହେଲେ ।

ପ୍ରାନ୍ତରଟିରେ ବହୁ ସଂଖ୍ୟକ ତମ୍ବୁ ପଡ଼ିଥିଲା ଓ ଉଭୟ ପକ୍ଷର ଅନୁଚରମାନଙ୍କ ପାଇଁ ଓ ଦର୍ଶକମାନଙ୍କ ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ ହୋଇଥିଲା । ରଣ୍‌ଜିତ୍ ସୈନ୍ୟମାନଙ୍କ ସହିତ ପ୍ରାନ୍ତରର ନିକଟ-ବର୍ତ୍ତୀ ହେବାରୁ ସାଲାଦିନ ଅନୁଚରମାନଙ୍କ ସହ ଆଗେଇ ଆସି ତାଙ୍କୁ ଅଭ୍ୟର୍ଥନା କରି ନେଲେ । ସୁଲତାନଙ୍କ ସୈନିକମାନେ ଉଜ୍ଜ୍ୱଳ ଚକଚକିଆ ପୋଷାକ ପିନ୍ଧିଥିଲେ; କିନ୍ତୁ ତାଙ୍କ ନିଜର ପୋଷାକ ସାଧାରଣ ଥିଲା । ତଥାପି ସେ ନିଜର ଗାମ୍ଭୀର୍ଯ୍ୟ ଓ ଆଚରଣରେ ଚିହ୍ନା ପଡ଼ି ଯାଉଥିଲେ ।

ରଣ୍‌ଜିତ୍ ଓ ସାଲାଦିନ ନିଜ ନିଜ ଘୋଡ଼ାରୁ ଓହ୍ଲାଇ ପଡ଼ି ପରସ୍ପରକୁ ଆଲିଙ୍ଗନ କଲେ । କୁଶଳ ପ୍ରଶ୍ନର ବିନିମୟ ପରେ ରାଣୀ ଓ ତାଙ୍କ ସହଚରୀମାନଙ୍କୁ ସାକ୍ଷାତ କରିବା ପାଇଁ ରଣ୍‌ଜିତ୍ ସାଲାଦି-ନଙ୍କୁ ଅନୁରୋଧ କଲେ । ସାଲାଦିନ ରାଣୀଙ୍କର ତମ୍ବୁ ଦ୍ୱାରରେ ପ୍ରଣାମ କରି ଜଣାଇଲେ, ଏପରି ସ୍ଥାନରେ ଭଦ୍ରମହିଳାମାନଙ୍କ ସଙ୍ଗେ ସାକ୍ଷାତ କରିବା ତାଙ୍କ ସମାଜରେ ଅଭଦ୍ରତାର ପରିଚାୟକ । ପୁଣି ରାଜାଙ୍କର ଶେଷ ପତ୍ରରେ ଯାହା ଲେଖା ଥିଲା, ସେଥିରେ ସାଲାଦିନ-ଙ୍କର ଆଶା ଲୋପ ପାଇଯାଇଥିଲା ।

ସାଲାଦିନ ରଣ୍‌ଜିତ୍‌ଙ୍କୁ ତାଙ୍କ ପାଇଁ ସୁସଜ୍ଜିତ ଏକ ତମ୍ବୁ ଭିତରକୁ ନେଇଗଲେ । ରାଜା ଆସନ ଗ୍ରହଣ କରି କହିଲେ, "ହକିମ୍ ମହାଶୟ କାହାନ୍ତି ? ମୁଁ ତାଙ୍କଠାରେ ବିଶେଷ ଭାବରେ ଋଣୀ । ମୁଁ ତାଙ୍କୁ ଏଠାରେ ଭେଟିବି ବୋଲି ଆଶା କରିଥିଲି ।"

ମୁହୂର୍ତ୍ତିକ ମଧ୍ୟରେ ସୁଲତାନ ମୁଣ୍ଡରେ ମେଷ ଲୋମର ଗୋଟିଏ ଲମ୍ବ ଟୋପି ପିନ୍ଧି ସ୍ୱର ବଦଳାଇ କହିଲେ, "ଜଣେ କବି କହିଛନ୍ତି, ଯୋଗୀ ଶିକାରୀଙ୍କ ପାଦର ଚିହ୍ନରୁ ମଧ୍ୟ ତାଙ୍କୁ ଚିହ୍ନି ପାରେ, କିନ୍ତୁ ଅରୋଗ୍ୟ ଲାଭ ପରେ ତାଙ୍କ ମୁହଁକୁ ଚାହିଁ ସୁଦ୍ଧା ଚିହ୍ନି ପାରେ ନାହିଁ । କଥାଟା ଖୁବ୍ ସତ ଦେଖୁଛି ।"

ବିସ୍ମୟରେ ରିଚାର୍ଡ଼ଙ୍କ ମୁହଁରୁ ବାକ୍ୟ ସ୍ଫୁରିଲା ନାହିଁ । ତାଙ୍କ ଆଗରେ ସୁଲତାନ ସାଲାଦିନ ନାହାନ୍ତି, ଠିଆ ହୋଇଛନ୍ତି ହକିମ୍ । କିଛି ସମୟ ପରେ ରାଜା କହିଲେ, "ଏ ତ ଇନ୍ଦ୍ରଜାଲ । ମୋର ଭ୍ରାତୃ ସମ ସାଲାଦିନ ହକିମ୍‌ଙ୍କ ଭିତରେ ଲୀନ ହୋଇଗଲେ ।"

ସୁଲତାନ ସଂକ୍ଷେପରେ କହିଲେ, "ଆମ ଆଖି ଅନେକ ସମୟରେ ଆମକୁ ପ୍ରତାରଣା କରିଥାଏ ।"

ରାଜା—ହଁ, ତା ସତ । ଆପଣଙ୍କ ଯୋଗୁ ସେହି ଚିତାବାଘ ଚିହ୍ନିତ ନାଇଟର ଜୀବନ ରକ୍ଷା ହେଲା । ଆପଣଙ୍କ ଯୋଗୁ ସେ ପୁଣି ଛଦ୍ମ ବେଶରେ ମୋ ଶିବିରକୁ ଆସି ପାରିଲା । ଆପଣ କଣ କରି ନ ପାରନ୍ତି ?

ସୁଲତାନ—କିନ୍ତୁ ଆପଣ ତାର ଛଦ୍ମବେଶ ସତ୍ତ୍ୱେ ତାକୁ ଚିହ୍ନି ପାରିଛନ୍ତି । ମୁଁ ଏତେ ଦୂର ଆଶା କରି ନଥିଲି ।

ରାଜା—ଦୈବାତ୍ ମୁଁ ତାକୁ ଚିହ୍ନିବାର ସୁବିଧା ପାଇଥିଲି । ଆହତ ଅବସ୍ଥାରେ ତା କ୍ଷତରୁ ରକ୍ତ ଚୋପିଲା ବେଳେ ମୁଁ ଲକ୍ଷ୍ୟ କରିଥିଲି ଯେ ତା ଦେହରେ ରଙ୍ଗ ବୋଳା ଯାଇଛି । ତାର ଗଠନ ଭୁଲି ହୁଅନ୍ତା ନାହିଁ । ତେଣୁ ମୁଁ ତାକୁ ଚିହ୍ନି ପାରିଲି । ମୁଁ ଆପଣଙ୍କ ଚିଠିଟି ତାରି ହାତରେ ଏଡ଼ିଥଙ୍କ ପାଖକୁ ପଠାଇଥିଲି । ମୋର ଉଦ୍ଦେଶ୍ୟ ଥିଲା, ଏଡ଼ିଥ ତାକୁ ଘୃଣା କରିବେ । ପରେ ଦେଖିଲି, ଏଡ଼ିଥ ତା ଛଡ଼ା ଅନ୍ୟ କାହାରିକୁ କଦାପି ବିବାହ

କରବେ ନାହିଁ । ଯାହା ହେଉ କାଲ୍ ପୁଣି ଯୁଦ୍ଧଭୂମିରେ ତାର କୃତିତ୍ୱ ଦେଖିବାର ସୁଯୋଗ ମିଳିବ ।

ସୁଲତାନ—ତାର ଦୃଢ଼ ବିଶ୍ୱାସ, ସେ ଦ୍ୱନ୍ଦ୍ୱଯୁଦ୍ଧରେ କନରେଡ଼କୁ ପରାସ୍ତ କରିବ । ମୁଁ ତାକୁ ଉପଯୁକ୍ତ ସାଞ୍ଜୁ, ଅସ୍ତ୍ରଶସ୍ତ୍ର ଓ ଘୋଡ଼ା ଯୋଗାଇ ଦେଇଛି । ତାର ସାହସ ଓ ବୀରତ୍ୱ ବିଷୟରେ ମୋର ଆଦୌ ସନ୍ଦେହ ନାହିଁ ।

ରାଜା—କିନ୍ତୁ ତାର ପ୍ରେମ ପଥରେ ଆପଣ ଯେ ପ୍ରତିବନ୍ଧକ, ଏକଥା ସେ ଜାଣେ କି ?

ସୁଲତାନ—ବୋଧହୁଏ ଜାଣେ । କିନ୍ତୁ ମୋର ବହୁ ପୂର୍ବରୁ ସେ ଏଡଥକୁ ତାର ପ୍ରେମସିଂହାସନରେ ବସାଇଛି । ହୁଏତ ସେ ସିଂହାସନରୁ ଏଡ଼ଥଙ୍କୁ ଜୀବନରେ ବିଦାୟ ଦେଇ ପାରିବ ନାହିଁ । ମୁଁ ଏତେ ନୀଚ ନୁହେଁ ଯେ ଏଥିପାଇଁ ତା ଉପରେ ପ୍ରତିଶୋଧ ନେବି । ବ୍ୟର୍ଥ ପ୍ରଣୟର ଯନ୍ତ୍ରଣା ସହ୍ୟ କରିବାକୁ ଅଲ୍ଲା ମୋତେ ଶକ୍ତି ଦେବେ । ବର୍ତ୍ତମାନ ଅଷ୍ଟ୍ରିଆର ଡିଉକ ଓ ଅନ୍ୟାନ୍ୟ ନାଇଟଙ୍କୁ ମୋର ସମ୍ବର୍ଦ୍ଧନା ଜଣାଇବା ଉଚିତ । ସମ୍ବର୍ଦ୍ଧନାର ଯୋଗ୍ୟ ନ ହେଲେ ହେଁ ସେମାନଙ୍କୁ ସମ୍ମାନ ଦେଖାଇବା ମୋର ଗୋଟାଏ କର୍ତ୍ତବ୍ୟ ।

ସୁଲତାନ ଏହା କହି ବିଦାୟ ନେଲେ । ଏହି ସମୟରେ ଡିଭକ୍ସ ଆସି ରାଜାଙ୍କୁ ଜଣାଇଲେ, "କାଲ୍ ଯେଉଁ ନାଇଟ ଆପଣଙ୍କ ପ୍ରତିନିଧି ରୂପେ ଯୁଦ୍ଧ କରିବେ, ସେ ଆଜି ସନ୍ଧ୍ୟାରେ ଆପଣଙ୍କ ସାକ୍ଷାତ ଚାହାନ୍ତି ।"

ରାଜା ସାମାନ୍ୟ ହସି ଦେଇ ପଚାରିଲେ, "ସେ କିଏ ତୁମେ ଜାଣ କି ?"

ଉଭକ୍‌ସ—ଏଠାରେ ଏତେ ବିସ୍ମୟକର ଘଟନା ଘଟିଯାଉଛି ଯେ ମୋର ମସ୍ତିଷ୍କ ସ୍ଥିର ରହୁନାହିଁ ।

ରାଜା—ଅଚ୍ଛା, ତାଙ୍କ ସଙ୍ଗରେ ବର୍ତ୍ତମାନ ଜଣେ ଧର୍ମଯାଜକ ମଧ୍ୟ ଆସିଛନ୍ତି ତ ।

ଉଭକ୍‌ସ—ହଁ, ଏନ୍‌ଗାଡ୍ଡିର ସନ୍ନ୍ୟାସୀ ଥିଓଡୋରିକ ଆସିଛନ୍ତି; ଯିଏ ଅଗରୁ ଥରେ ତାଙ୍କର ସ୍ୱୀକାରୋକ୍ତି ଗ୍ରହଣ କରିଥିଲେ ।

ରାଜା—ବେଶ୍, ତାହା ହେଲେ ସେ ନାଇଟଙ୍କୁ କହିଦେବ; ସେଣ୍ଟ ଜର୍ଜ ପାହାଡ଼ରେ ମୋର ପତାକା ତଳେ ସେ ଯେଉଁ ଅପରାଧ କରିଥିଲେ କାଲି ହୀରକ ମରୁକୂପ ନିକଟରେ ଦ୍ୱନ୍ଦ୍ୱଯୁଦ୍ଧରେ ତାହା କ୍ଷାଳନ କଲା ପରେ ତାଙ୍କୁ ମୁଁ ଆଦରରେ ଗ୍ରହଣ କରିବ ।”

ଉଭକ୍‌ସ ପ୍ରମାଣ କରି ବିଦାୟ ନେଲେ ।

## ଉଣେଇଶ : ଦ୍ୱନ୍ଦ୍ୱ ଯୁଦ୍ଧ

ପରଦିନ ନିର୍ଦ୍ଦିଷ୍ଟ ସମୟରେ ତୂର୍ଯ୍ୟନାଦ ଶୁଣାଯିବା ମାତ୍ରେ ପ୍ରତିଦ୍ୱନ୍ଦ୍ୱୀ ଦ୍ୱୟ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଲେ । ଉଭୟେ ଆପାଦମସ୍ତକ ବର୍ମରେ ଆବୃତ । ଦୁହେଁ ଯାକ ଉନ୍ନତ ଶରୀର ଓ ରଣବିଦ୍ୟାରେ ନିପୁଣ ।

ରଣକ୍ଷେତ୍ରର ଏକ ପ୍ରାନ୍ତରେ ଗୋଟିଏ କ୍ଷୁଦ୍ର ଗୀର୍ଜା ପ୍ରସ୍ତୁତ ହୋଇଥିଲା । ତାହା ଉପରେ ଥିଲା ସ୍ୱର୍ଣ୍ଣ ଖଚିତ ଏକ ଉପାସନା ବେଦୀ । ଅଶ୍ୱାରୋହୀ ଦ୍ୱୟ ବେଦୀର ସମ୍ମୁଖରେ ଅଶ୍ୱରୁ ଓହ୍ଲାଇ ପଡ଼ି ନତମସ୍ତକ ହୋଇ ଶପଥ ନେଲେ, "ମୋର ଦାବୀ ନ୍ୟାୟ ଉପରେ ପ୍ରତିଷ୍ଠିତ । ଯଦି ତାହା ହୋଇ ନ ଥାଏ, ତେବେ ଭଗବାନ୍ ମୋତେ ଉପଯୁକ୍ତ ଦଣ୍ଡ ଦେବେ ।" ଶପଥ ନେଲାବେଳେ ଦର୍ଶକ-ମାନେ ଲକ୍ଷ୍ୟ କରିପାରିଲେ, କେନେଥଙ୍କ ମୁଖ ମଣ୍ଡଳରେ ଦୃଢ଼ ଆତ୍ମବିଶ୍ୱାସ ପ୍ରକଟିତ; ତାଙ୍କର କଣ୍ଠସ୍ୱର ଦୃଢ଼, ସୁସ୍ପଷ୍ଟ । କିନ୍ତୁ କନରେଡ଼ଙ୍କର ସ୍ୱର କ୍ଷୀଣ, ମୁଖ ପାଣ୍ଡୁର ।

ଶପଥ ପରେ ଉଭୟ ପ୍ରତିଦ୍ୱନ୍ଦ୍ୱୀ ଅଶ୍ୱାରୋହଣ କରି ନିଜ ନିଜ ସ୍ଥାନକୁ ଫେରିଗଲେ । କେନେଥଙ୍କ ପକ୍ଷର ଗୁହାରି ଘୋଷଣା କଲେ—ଏ ହେଉଛନ୍ତି ସ୍କଟଲଣ୍ଡର ବୀର ନାଇଟ କେନେଥ । ସେ ରଜା ରିଚାର୍ଡ଼ଙ୍କ ପ୍ରତିନିଧି ରୂପେ ଯୁଦ୍ଧ କରିବାକୁ ଆସି ଅଛନ୍ତି । ତାଙ୍କର ଅଭିଯୋଗ ହେଉଛି, ମନଫେରାଟର ମାର୍କୁଇସ କନରେଡ଼ ଇଂରେଜ ପତାକା ପ୍ରତି ଅବଜ୍ଞା ଦେଖାଇ ରଜା ରିଚାର୍ଡ଼ଙ୍କୁ ଅପମାନ ଦେଇଅଛନ୍ତି ।

ଗୁରଣର କଥା ଶେଷ ନ ହେଉଣୁ ଇଂରେଜ ସୈନ୍ୟମାନେ ଅନନ୍ଦ ଧ୍ୱନି କରି ଉଠିଲେ । ଏହି ସମୟରେ କନରେଡ଼ଙ୍କର ଗୁରଣ ଅସି ଏହାର ପ୍ରତ୍ୟୁତ୍ତର ଦେଲା; କିନ୍ତୁ ସୈନ୍ୟମାନଙ୍କର ଉଲ୍ଲାସ ଧ୍ୱନି ମଧ୍ୟରେ ତାହା କେହି ଶୁଣି ପାରିଲେ ନାହିଁ । ଅନନ୍ତର କନରେଡ଼ କହିଲେ, "ଏ ଅଭିଯୋଗ ଅମୂଳକ । ମୁଁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ଦ୍ୱନ୍ଦ୍ୱଯୁଦ୍ଧରେ ମୁଁ ନିଜର ନିର୍ଦ୍ଦୋଷତାର ପ୍ରମାଣ ଦେବାକୁ ପ୍ରସ୍ତୁତ ।"

ସୈନିକମାନେ ଅସି ଉଭୟ ପ୍ରତିଦ୍ୱନ୍ଦ୍ୱୀଙ୍କ ବକ୍ଷରେ ନିଜ ନିଜର ଢାଲ୍ ଟଙ୍ଗାଇ ଦେଲେ ଓ ହାତକୁ ବର୍ଚ୍ଛା ବଢ଼ାଇ ଦେଲେ । ତହୁଁ ଗୁରଣ, ଭୃତ୍ୟ ଓ ଯୁଦ୍ଧର ପରିଚାଳକ ପ୍ରଭୃତି ରଣକ୍ଷେତ୍ରରୁ ଅପସରି ଗଲେ । ଦର୍ଶକମଣ୍ଡଳୀଙ୍କ ମନରେ ଅବେଗ ଓ ଉତ୍କଣ୍ଠା ପରିପୂର୍ଣ୍ଣ ।

ଉଭୟ ଯୋଦ୍ଧା କିଛି କାଳ ଯାଏ ପରସ୍ପର ଆଡ଼କୁ କେବଳ ଗୁହିଁ ରହିଲେ । ସମସ୍ତେ ନୀରବ ନିସ୍ପନ୍ଦ ଭାବରେ ଅପେକ୍ଷା କରି ରହିଛନ୍ତି ସଙ୍କେତ ଧ୍ୱନିକୁ । କେବଳ ଅଶ୍ୱର ନାସିକା ଧ୍ୱନି ଓ କ୍ଷୁରର ଧ୍ୱନି ଛଡ଼ା ଅନ୍ୟ କୌଣସି ଶବ୍ଦ ଶୁଣାଯାଉ ନ ଥିଲା । ଏହି ସମୟରେ ସାଲାଦିନ ସଙ୍କେତ ଦେବାରୁ ଶତ ଶତ ବାଦ୍ୟ ଏକ ସଙ୍ଗରେ ବାଜି ଉଠିଲା । ସେହି ବାଦ୍ୟ ଧ୍ୱନିରେ ଗଗନ ମଣ୍ଡଳ ମଧ୍ୟ କମ୍ପି ଗଲା । ପ୍ରତିଦ୍ୱନ୍ଦ୍ୱୀ ଦୁହେଁ ନିଜ ନିଜ ଅଶ୍ୱର ପାର୍ଶ୍ୱରେ ପଦାଘାତ କରି ପରସ୍ପର ଆଡ଼କୁ ଧାବମାନ ହେଲେ । ରଣଭୂମିର ମଧ୍ୟସ୍ଥଳରେ ଦୁହେଁ ପରସ୍ପର ଉପରକୁ ଲମ୍ଫ ପ୍ରଦାନ କଲେ ।

ଶକ୍ତିରେ, ବୀରତ୍ୱରେ ଓ କୌଶଳରେ ଦୁଇ ବୀର କେହି କାହାଠାରୁ ଊଣା ନୁହନ୍ତି । ତେଣୁ ବିଜୟଲକ୍ଷ୍ମୀ କାହାକୁ ଆଶ୍ରୟ କରିବେ ଏ ବିଷୟରେ ଦର୍ଶକମାନଙ୍କ ମଧ୍ୟରେ ଆଲୋଚନା ଗୁଲିଲା ।

କନରେଡ଼ଙ୍କର ବର୍ଚ୍ଛା କେନେଥଙ୍କ ଢାଲର ମଧ୍ୟ ସ୍ଥଳରେ ଆଘାତ କଲା; କିନ୍ତୁ ଢାଲଟି ଏପରି ଇସ୍ପାତରେ ତିଆରି ଯେ ସେଥିରେ ବାଜିବାମାତ୍ରେ ବର୍ଚ୍ଛାଟି ଖଣ୍ଡବିଖଣ୍ଡ ହୋଇ ତଳେ ପଡ଼ିଗଲା । ମାତ୍ର ସାର୍ କେନେଥଙ୍କ ବର୍ଚ୍ଛା କନରେଡ଼ଙ୍କ ଢାଲ ଭେଦ କରି ତାଙ୍କ ବକ୍ଷ ଦେଶରେ ପଶିଗଲା । ସେ ମୁହୂର୍ତ୍ତକ ମଧ୍ୟରେ ଅଶ୍ୱରୁ ଗଡ଼ିପଡ଼ି ତଳେ ଲୋଟିବାକୁ ଲାଗିଲେ । ଇଂରେଜ ସୈନ୍ୟମାନଙ୍କ ମଧ୍ୟରେ ଆନନ୍ଦ ଖେଳିଗଲା । କେନେଥ ନିଜ ଅଶ୍ୱରୁ ଓହ୍ଲାଇ ପଡ଼ି ଅସି-ହସ୍ତରେ କନରେଡ଼ଙ୍କ ପାଖକୁ ଚାଲିଆସିଲେ ଓ ଅସିର ଅଗ୍ରଭାଗ ତାଙ୍କ କଣ୍ଠ ଦେଶରେ ରଖି କହିଲେ, "ରେ ପାପିଷ୍ଠ ଦୁରାତ୍ମା, ଏବେ ନିଜର ପାପ ସ୍ୱୀକାର କର ।" କ୍ଷୀଣ କଣ୍ଠରେ କନରେଡ଼ କହିଲେ, "ଆଉ ଅଧିକ ଲଜ୍ଜା ଦିଅନାହିଁ । ଧର୍ମରହିଁ ବିଜୟ ହୋଇଛି ।"

ତହୁଁ ରାଜା ଓ ଅନ୍ୟାନ୍ୟ ନେତାମାନେ କନରେଡ଼ଙ୍କ ପାଖକୁ ଆସି ଦେଖିଲେ ଯେ ସେ ଭୟଙ୍କର ଆଘାତ ପାଇଛନ୍ତି, ଅବସ୍ଥା ସାଂଘାତିକ । ରିଚାର୍ଡ଼ ସାଲାଦିନଙ୍କୁ କହିଲେ, "ବର୍ତ୍ତମାନ ଆପଣଙ୍କ ଅମୋଘ ତାବିଜ ସାହାଯ୍ୟରେ ଏ ହତଭାଗ୍ୟର ଜୀବନ ରକ୍ଷା କରନ୍ତୁ ।" ପ୍ରଥମେ ସେ ଅନିଚ୍ଛା ପ୍ରକାଶ କରୁଥିଲେ; କିନ୍ତୁ ରିଚାର୍ଡ଼ଙ୍କର ବାରମ୍ବାର ଅନୁରୋଧ ଏଡ଼ି ନପାରି ଚିକିତ୍ସା କରିବାକୁ ସ୍ୱୀକୃତ ହେଲେ ଏବଂ କନରେଡ଼ଙ୍କୁ ତାଙ୍କ ତମ୍ବୁକୁ ନେଇଯିବାକୁ ଆଦେଶ ଦେଲେ । କିନ୍ତୁ ଏଥିରେ ଗ୍ରାଣ୍ଡମାଷ୍ଟରଙ୍କର ଆପତ୍ତି ହେଲା । ସେ କହିଲେ, "ଅଷ୍ଟ୍ରିଆର ଡିଉକ ଓ ମୁଁ ତାଙ୍କ ପକ୍ଷର ଲୋକ ଥାଉଁ ଥାଉଁ ଆମ ତମ୍ବୁ ଛଡ଼ା ଅନ୍ୟ କୌଣସିଠାରେ ତାଙ୍କର ଚିକିତ୍ସା କରାଯାଇ ନପାରେ ।" ସାଲାଦିନ ଏଥିରେ ମଧ୍ୟ କୁଣ୍ଠିତ ଥିଲେ; କିନ୍ତୁ ରିଚାର୍ଡ଼ଙ୍କ ଅନୁରୋଧରେ ସେ ଗ୍ରାଣ୍ଡମାଷ୍ଟରଙ୍କ ତମ୍ବୁରେ କନରେଡ଼ଙ୍କ ଚିକିତ୍ସା କରିବାକୁ ସ୍ୱୀକୃତ ହେଲେ ।

କନରେଡ଼ଙ୍କୁ ଅଚୈତନ୍ୟ ଅବସ୍ଥାରେ କେତେ ଜଣ ସୈନିକ ଗ୍ରାଣ୍ଡମାଷ୍ଟରଙ୍କ ତମ୍ବୁକୁ ବହିନେଲେ । ଅଗତ୍ୟା ସାଲାଦ୍ଦିନଙ୍କୁ ତାଙ୍କ ପଛେ ପଛେ ଯିବାକୁ ହେଲା । ଯିବା ପୂର୍ବରୁ ସେ ସମ୍ମିଳିତ ସମସ୍ତ ରାଜା ଓ ସେମାନଙ୍କ ଅନୁଚରମାନଙ୍କୁ ତାଙ୍କ ଶିବିରରେ ମଧ୍ୟାହ୍ନ ଭୋଜନ ନିମନ୍ତେ ନିମନ୍ତ୍ରଣ କରି ଗଲେ ।

ଏଣେ ରିଚର୍ଡ଼ କେନେଥଙ୍କୁ ସଙ୍ଗରେ ନେଇ ବିଜୟ ଗର୍ବରେ ରାଣୀଙ୍କର ତମ୍ବୁରେ ଉପସ୍ଥିତ ହେଲେ । କେନେଥଙ୍କ ଏକ ପାର୍ଶ୍ୱରେ ରାଜା ଓ ଅନ୍ୟ ପାର୍ଶ୍ୱରେ ସାଲିସବରିର ଅର୍ଲ । କେନେଥ ଜାନୁପାତ କରି ରାଣୀଙ୍କୁ ଅଭିବାଦନ କଲେ । ଏଡିଥ ରାଣୀଙ୍କ ପାଖରେ ବସିଥିଲେ । ରାଜକୁମାରୀ ଏଡିଥହିଁ କେନେଥଙ୍କ ଚିନ୍ତାର କେନ୍ଦ୍ରସ୍ଥଳ ଅଧିକାର କରିଥିଲେ ।

ରିଚର୍ଡ଼ କହିଲେ, "କେନେଥଙ୍କର ବଣସଜ୍ଜା ଉନ୍ମୋଚନ କରି ତାଙ୍କୁ ବୀରର ଉପଯୁକ୍ତ ସମ୍ମାନ ଦିଅ ।" ରାଣୀ ଓ ଏଡିଥ ଆନନ୍ଦରେ ଏହି ଆଦେଶ ପାଳନ କଲେ । ରାଣୀ ତାଙ୍କ ମୁଖର ଆବରଣ ଖୋଲିବା ବେଳେ ରାଜା ପରିହାସ କରି କହିଲେ, "ଏ କଂଣ ସେହି କୃଷ୍ଣକାୟ କାଫ୍ରି ? ଆଜିଠାରୁ ତାଙ୍କର ଛଦ୍ମବେଶର ଦିନ ଶେଷ ହେଲା । ଏବେ ସମସ୍ତେ ତାଙ୍କର ପରିଚୟ ଶୁଣନ୍ତୁ । ସେ ସାର୍ କେନେଥ ନାମରେ ଜଣେ ଅଜ୍ଞାତ କୁଳଶୀଳ ନାଇଟ ବେଶରେ ଆମର ପତାକା ତଳେ ଧର୍ମଯୁଦ୍ଧରେ ଯୋଗ ଦେଇଥିଲେ । ତାଙ୍କର ଭୃତ୍ୟ ଷ୍ଟ୍ରକାନଠାରୁ ଡିଭକ୍ସ ତାଙ୍କର ପ୍ରକୃତ ପରିଚୟ ଜାଣିପାରିଥିଲେ । ତାହା ପରେ ତାଙ୍କର ଗୋପନ କଥା ମୁଁ ଶୁଣି ପାରିଥିଲି ଧର୍ମଯାଜକ ଥିଓଡରିକଙ୍କଠାରୁ । ଧର୍ମଯାଜକଙ୍କ ନିକଟରେ ଜୀବନର ଶେଷ କାଳରେ କେହି କୌଣସି କଥା ଗୋପନ ରଖେ ନାହିଁ । ତେଣୁ ଥିଓଡରିକ ତାଙ୍କ ମୁଖରୁ ଯେଉଁ ସ୍ୱୀକାରୋକ୍ତି

ଶୁଣିଥିଲେ ତାହା ନିଶ୍ଚୟ ସତ୍ୟ । ଏବେ ମୁଁ ତାଙ୍କର ସେହି ପରିଚୟ ସର୍ବ ସମକ୍ଷରେ ପ୍ରକାଶ କରୁଛି ।

ଏ ହେଉଛନ୍ତି ସ୍କଟଲଣ୍ଡର ରାଜା ଉଇଲିଅମଙ୍କର ଭ୍ରାତୁଷ୍ପୁତ୍ର ଡେଭିଡ୍‌, ସ୍କଟଲଣ୍ଡର ଭାବୀ ଉତ୍ତରାଧିକାରୀ ।"

ସମସ୍ତେ ବିସ୍ମିତ ହୋଇ ଏହି ବିଚିତ୍ର କାହାଣୀ ଶୁଣୁଥିଲେ । ରିଚ୍ଚାର୍ଡ଼ ପୁଣି କହିବାକୁ ଲାଗିଲେ, "ସ୍କଟଲଣ୍ଡର ରାଜା ମୋତେ ପ୍ରତିଶ୍ରୁତି ଦେଇଥିଲେ ଯେ ସେ ତାଙ୍କ ଭ୍ରାତୁଷ୍ପୁତ୍ର ଡେଭିଡ଼ଙ୍କ ସହିତ ଏକ ଦଳ ସୈନ୍ୟ ଧର୍ମଯୁଦ୍ଧପାଇଁ ପଠାଇବେ । କିନ୍ତୁ ନିଜ ରାଜ୍ୟ ମଧ୍ୟରେ କେତେକ ଗୋଳମାଳ ହେବାରୁ ସେ ସୈନ୍ୟ ପଠାଇ ପାରିଲେ ନାହିଁ । ପ୍ରତିଶ୍ରୁତି ଭଙ୍ଗ କରିବା ଲଜ୍ଜାର କଥା, ଏହା ଭାବିକରି ଡେଭିଡ଼ ଛଦ୍ମବେଶରେ ଆମ ସୈନ୍ୟ ଦଳରେ ଯୋଗ ଦେଲେ । ସେତେବେଳେ ତାଙ୍କର ନାମ ହେଲା କେନେଥ ଓ ତାଙ୍କ ଅଧୀନରେ ଅଳ୍ପ କେତେ ଜଣ ସୈନ୍ୟ ଥିଲେ ।

"ହାୟ, ସେଦିନ ପତାକା ଚୋରି ରାତିରେ ମୁଁ ଯଦି ତାଙ୍କୁ ପ୍ରାଣଦଣ୍ଡ ଦେଇଥାନ୍ତି, ଚିରଦିନ ଅନୁତାପ କରିବାକୁ ପଡ଼ିଥାନ୍ତା । ପ୍ରାଣ ଦେଇ ମଧ୍ୟ ସେ ପାପର ପ୍ରାୟଶ୍ଚିତ୍ତ ହୋଇ ପାରି ନଥାନ୍ତା ।"

ସେଇଠାରେ ସେ ସର୍ବ ସମକ୍ଷରେ ଘୋଷଣା କଲେ ଯେ ଅଲ୍‌ଫ ଡେଭିଡ଼ଙ୍କ ସହିତ ଏଡିଥଙ୍କର ବିବାହ ହେବ ।

## କୋଡ଼ିଏ : ପାପର ଦଣ୍ଡ

ସୁଲତାନଙ୍କ ଶିବିରରେ ମଧ୍ୟାହ୍ନ ଭୋଜନର ନିମନ୍ତ୍ରଣ ରକ୍ଷା କରିବା ନିମନ୍ତେ ରବର୍ଟ୍ସ ଓ ଡେଭିଡ଼ ଉପସ୍ଥିତ ହେଲେ । ସେତେବେଳକୁ ପ୍ରାୟ ସମସ୍ତ ରାଜା ଓ ନେତୃବର୍ଗ ପହଞ୍ଚି ସାରିଥିଲେ । ଆହତ ଓ ଶଯ୍ୟାଶାୟୀ ଥିବାରୁ କେବଳ କନରେଡ଼ ସେଠାକୁ ଆସିପାରି ନ ଥିଲେ । ମରୁଭୂମିର ଉତ୍ତାପରୁ ଶାନ୍ତି ପାଇବା ଲାଗି ସମସ୍ତଙ୍କ ପାଇଁ ଶୀତଳ ସରବତର ବ୍ୟବସ୍ଥା ହୋଇଥିଲା । ଅତିଥିମାନେ ଗିଲାସେ ଲେଖାଏଁ ସରବତ ଧରି ପିଇବାକୁ ଲାଗିଲେ । ଅନ୍ୟାନ୍ୟମାନଙ୍କ ପରି ଗ୍ରାଣ୍ଡମାଷ୍ଟର ମଧ୍ୟ ଗୋଟିଏ ସରବତ ଗିଲାସ ଧରି ପିଇବାକୁ ଯାଉଛନ୍ତି, ଏହି ସମୟରେ ହଠାତ୍ ବାମନଟି କେଉଁଠାରୁ ଦୌଡ଼ି ଆସି ଚିତ୍କାର କଲା, "ତୁମର ପ୍ରାପ୍ୟ ନିଅ ।" ଗ୍ରାଣ୍ଡମାଷ୍ଟର ଭୟଙ୍କର ଭାବରେ ଚମକି ପଡ଼ିଲେ । ଗିଲାସଟା ଟଳମଳ ହେଲା । ତାଙ୍କର ଏହି ଦୁର୍ବଳତା ଲୁଚାଇବା ପାଇଁ ସେ ଗିଲାସକୁ ମୁହଁ ପାଖକୁ ନେଇ ଟେକି ଧରିଲେ । କିନ୍ତୁ ସରବତ ତାଙ୍କ ଓଷ୍ଠ ସ୍ପର୍ଶ କରିବା ପର୍ଯ୍ୟନ୍ତ ସେ ଅବସର ପାଇ ପାରିଲେ ନାହିଁ । ସୁଲତାନଙ୍କର କୋଷମୁକ୍ତ ଅସିର ଝଲକ ବିଜୁଳି ପରି ଖେଳିଗଲା ଓ ମୁହୂର୍ତ୍ତକ ମଧ୍ୟରେ ଗ୍ରାଣ୍ଡମାଷ୍ଟରଙ୍କ ମସ୍ତକ ତମ୍ବୁର ଗୋଟାଏ କଣରେ ପଡ଼ିଗଲା । ଗଣ୍ଡିଟା ସରବତ ଗିଲାସ ସହ ଆସନରୁ ତଳେ ଗଡ଼ିପଡ଼ିଲା । ଉଷ୍ଣ ରକ୍ତ ସଙ୍ଗେ ଶୀତଳ ସରବତ ପ୍ରବାହ ଏକାକାରରେ ବହିଗଲା ।

ରାଜାମାନେ ସମସ୍ତେ ଏହି ଘଟନାରେ ଉଦ୍‌ବିଗ୍ନ ହୋଇଗଲେ । କିନ୍ତୁ ବର୍ଗଣ୍ଡିଙ୍କ ମୁହଁରେ କିଛି ପରିବର୍ତ୍ତନ ଦେଖାଗଲା ନାହିଁ । ରାଜାମାନଙ୍କ ମଧ୍ୟରୁ ଅନେକେ ଚିତ୍କାର କରି ଉଠିଲେ, "ବିଶ୍ୱାସ-ଘାତକତା ! ଶତ୍ରୁର ଏହି ବିଶ୍ୱାସଘାତକତାର ପ୍ରତିଶୋଧ ନେବାକୁ ହେବ ।" ସୈନ୍ୟମାନେ କୋଷରୁ ଅସି ବାହାର କରି ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇଗଲେ । ସାଲାଦିନ ମୃତ ଦେହକୁ ଦୂରକୁ ନେଇଯିବାପାଇଁ କେତେକ ଭୃତ୍ୟଙ୍କୁ ଆଦେଶ ଦେଲେ ।

ତାପରେ ଉପସ୍ଥିତ ରାଜାଗଣଙ୍କୁ ଶାନ୍ତ ରହିବାକୁ ଅନୁରୋଧ କରି ସୁଲତାନ କହିଲେ, "ମୁଁ କାହିଁକି ଗ୍ରାଣ୍ଡମାଷ୍ଟରଙ୍କୁ ହତ୍ୟା କଲି, ତାହାର କାରଣ ଶୁଣନ୍ତୁ । ଅଳ୍ପ ସମୟ ପୂର୍ବେ ଏହି ଗ୍ରାଣ୍ଡମାଷ୍ଟର ତାଙ୍କର ପୂର୍ବ ବନ୍ଧୁ ମନସେରାଟର ମାର୍କୁଇସ କନରେଡ଼ଙ୍କୁ ନିଜ ହାତରେ ହତ୍ୟା କରି ଅଛନ୍ତି । ଏବେ ସୁଦ୍ଧା ତାଙ୍କର ଶବ ପଡ଼ି ରହିଛି । ମୋର ଔଷଧ ପାନ କରି ସେ ପ୍ରାୟ ଆରୋଗ୍ୟ ହୋଇ ଆସିଥିଲେ । କିନ୍ତୁ ରୋଗମୁକ୍ତ ହେଲେ କାଳେ ସେ ଗ୍ରାଣ୍ଡମାଷ୍ଟରଙ୍କ ସମସ୍ତ ଅପକର୍ମ ଦୋଟରେ ପକାଇ ଦେବେ ଏହି ଭୟରେ ସେ ତାଙ୍କୁ ହତ୍ୟା କରି ଅଛନ୍ତି । ଗ୍ରାଣ୍ଡମାଷ୍ଟର କନରେଡ଼ଙ୍କୁ ହତ୍ୟା କଲାବେଳେ ବାମନଟି ନିକଟରେ ଥିବାରୁ ସବୁ ଦେଖି ପାରିଥିଲା ଓ ମତେ ଜଣାଇଥିଲା । ଗ୍ରାଣ୍ଡମାଷ୍ଟର କନରେଡ଼ଙ୍କ ବକ୍ଷରେ ଅସି ଦ୍ୱାରା ଆଘାତ କଲାବେଳେ କହିଥିଲେ, "ତୁମର ପ୍ରାପ୍ୟ ନିଅ ।" ଆପଣମାନେ ଲକ୍ଷ୍ୟ କରିଥିବେ—ବାମନ ଯେତେବେଳେ 'ତୁମର ପ୍ରାପ୍ୟ ନିଅ' ବୋଲି କହିଲା, ସେତେବେଳେ ଗ୍ରାଣ୍ଡମାଷ୍ଟର କିପରି ଚମକି ପଡ଼ିଥିଲେ । ଏଥିରୁ ତାଙ୍କର ଅପରାଧ ସ୍ପଷ୍ଟ ପ୍ରମାଣିତ । ଆପଣମାନେ ଏବେ ବୁଝିପାରିବେ, ଏହି ହତ୍ୟାଦ୍ୱାରା ମୁଁ କିଛି ପାପ କରି ନାହିଁ ।"

ବର୍ଗୁଡ଼ କହିଲେ, "ମହାଶୟ ଆପଣଙ୍କ କଥାରେ ମୋର ପୂର୍ଣ୍ଣ ବିଶ୍ୱାସ । କିନ୍ତୁ ସୁଲତାନ, ଏପରି ସ୍ଥାନରେ, ଏପରି ସମୟରେ ନିଜ ହାତରେ ତାକୁ ବଧ କଲେ କାହିଁକି ?"

ସୁଲତାନ—ଏପରି କାର୍ଯ୍ୟ କରିବାକୁ ମୁଁ ବାଧ୍ୟ ହେଲି । କାରଣ ଆମ ଜାତିର ନିୟମ ହେଉଛି, ଯେଉଁ ଲୋକ ଥରେ ଆମର ଆତିଥ୍ୟ ଲାଭ କରିଥାଏ, ସେ ଚିରଦିନ ଆମର ଅବଧ୍ୟ । ଲୋକଟା ଯେବେ ମୋ ଶିବିରରେ ସେଣ୍ଟ ସରବତରୁ ବିନ୍ଦୁଏ ହେଲେ ପାନ କରିଥାନ୍ତା, ତେବେ ମୁଁ ତାକୁ ବଧ କରି ପାରି ନଥାନ୍ତି ।

କେହି କିଛି ପ୍ରତିବାଦ କରିବାର ନଥିଲା ।

ତହିଁର ଦିନ ବର୍ଗୁଡ଼ଙ୍କଠାରୁ ସାଲାଦିନ ବିଦାୟ ନେଲେ । ବିଷଣ୍ଣ ବଦନରେ ସାଲାଦିନ କହିଲେ, "ଆପଣଙ୍କର ମହତ୍ତ୍ୱ ଓ ବୀରତ୍ୱରେ ମୁଁ ମୁଗ୍ଧ । ଦିନେ ମୋର ଆଶା ଥିଲା, ଆପଣଙ୍କ ସଙ୍ଗେ ବୈବାହିକ ସମ୍ବନ୍ଧରେ ଆବଦ୍ଧ ହୋଇ ନିଜକୁ ଗୌରବାନ୍ୱିତ କରିବି । ଆପଣ ଓ ମୁଁ ଦୁହେଁ ଯାକ ମିଳି ଜେରୁଜେଲମର ଶାସନ ଭାର ଗ୍ରହଣ କରିବୁ । ଆମର ମିଳିତ ଶାସନରେ ତୀର୍ଥଯାତ୍ରୀମାନଙ୍କର କୌଣସି ଆଶଙ୍କା ରହିବ ନାହିଁ । ନିର୍ଭୟରେ ସମସ୍ତେ—କି ଖ୍ରୀଷ୍ଟିଆନ, କି ମୁସଲମାନ—ଜେରୁଜେଲମରେ ନିଜ ନିଜର ତୀର୍ଥଯାତ୍ରା ଓ ଧର୍ମକାର୍ଯ୍ୟ କରି ପାରିବେ । କିନ୍ତୁ ବିଧାତାଙ୍କର ଇଚ୍ଛା ଭିନ୍ନ ପ୍ରକାର । ଆପଣଙ୍କର ଭଗିନୀ ଯାହାଙ୍କୁ ପତି ପଦରେ ବରଣ କରିଅଛନ୍ତି, ସେ ମଧ୍ୟ ଆପଣଙ୍କ ପରି ବୀର, ଆପଣଙ୍କ ପରି ଉଦାର ଓ ମହତ । ମୋର ଏକମାତ୍ର କାମନା, ସେମାନଙ୍କର ଦାମ୍ପତ୍ୟ ଜୀବନ ସୁଖମୟ ହେଉ । ଆପଣଙ୍କୁ ଜେରୁଜେଲମ ପ୍ରତ୍ୟର୍ପଣ କରି ପାରିଲେ ମୁଁ ସୁଖୀ ହୁଅନ୍ତି ; କିନ୍ତୁ ତାହା ମୋ ପକ୍ଷରେ ସମ୍ଭବ ନୁହେଁ । ଜେରୁଜେଲମ ଖ୍ରୀଷ୍ଟିଆନମାନଙ୍କ ପକ୍ଷରେ

ଯେପରି ପବିତ୍ର ତୀର୍ଥକ୍ଷେତ୍ର, ମୁସଲମାନମାନଙ୍କ ପକ୍ଷରେ ମଧ୍ୟ ସେହିପରି । ତେଣୁ ମୁଁ ପ୍ରତିଶ୍ରୁତି ଦେଉଛି, ଆଜିଠାରୁ ଜେରୁଜେଲମ-ଯାତ୍ରୀ କୌଣସି ଖ୍ରୀଷ୍ଟିଆନ ଉପରେ ଆମପକ୍ଷରୁ କୌଣସି ଅତ୍ୟାଚାର ହେବ ନାହିଁ । ଆପଣ ସ୍ୱଦେଶକୁ ଫେରିଯିବେ । ସହସ୍ର ସହସ୍ର ମାଇଲ୍ ଦୂରରେ ରହିଲେ ସୁଦ୍ଧା ଆପଣଙ୍କ ସ୍ମୃତିର ମର୍ଯ୍ୟାଦା ରକ୍ଷା ନିମନ୍ତେ ମୁଁ ଏ ବିଷୟରେ ସାବଧାନ ରହିବି । ଯଦି କେବେ ଆପଣ ଜଣେ ବା ଦୁଇ ଜଣ ମାତ୍ର ସୈନିକ ସହ ଏହି ମରୁଭୂମିରେ ଉପସ୍ଥିତ ହୁଅନ୍ତି, ତେବେ କେହି ଆପଣଙ୍କର କେଶାଗ୍ର ସୁଦ୍ଧା ସ୍ପର୍ଶ କରିବନାହିଁ; ବରଂ ଆପଣଙ୍କ ଆଦେଶ ଅବିଳମ୍ବେ ପାଳିତ ହେବ । ମୋତେ ବିଦାୟ ଦିଅନ୍ତୁ, ରଜା ରିଚ୍ଚାର୍ଡ଼ । ଆପଣଙ୍କ ଧର୍ମଯୁଦ୍ଧର ଅବସାନ ହୋଇ ଆସୁଛି । ଆପଣ ନିରାପଦରେ ସ୍ୱଦେଶକୁ ଫେରି ଯାଆନ୍ତୁ, ଏହା ମୋର ଆନ୍ତରିକ କାମନା ।"

ଅର୍ଲ ଡେଭିଡ଼ଙ୍କ ସହିତ ଏଡ଼ିଥଙ୍କର ବିବାହ ଉପଲକ୍ଷେ ସାଲାଦିନ ଉପହାର ସ୍ୱରୂପ ପଠାଇ ଦେଲେ, ସେହି ଦୈବୀଶକ୍ତି ସମ୍ପନ୍ନ ବିଚିତ୍ର ତାବିଜ ।

---

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

| | | |
|---|---|---|
| ୧ ॥ | ଅଲଭର ଟୁଇଷ୍ଟ ଓ ଡେଭିଡ୍ କପର୍‌ଫିଲ୍‌ଡ | ଟ ୧.୫୦ |
| ୨ ॥ | ଗଲିଭରର ଭ୍ରମଣକାହାଣୀ | ୧.୨୫ |
| ୩ ॥ | ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ | ୧.୬୦ |
| ୪ ॥ | ସମୁଦ୍ରର ନାବିକ | ୧.୫୦ |
| ୫ ॥ | ରଜା ସଲୋମନ୍‌ଙ୍କ ହୀରାଖଣି | ୨.୫୦ |
| ୬ ॥ | ବିପ୍ଳବୀ | ୨.୫୦ |
| ୭ ॥ | ଭିନ ସିପାହୀ | ୨.୪୦ |
| ୮ ॥ | ଫମୈଇନଗରୀର ଶେଷଦିନ | ୨.୫୦ |
| ୯ ॥ | ରାଜପୁତ୍ର ଓ ଭିକାରି | ୨.୦୦ |
| ୧୦ ॥ | ଦୁଇଟି ନଗରୀର କାହାଣୀ | ୨.୦୦ |
| ୧୧ ॥ | ଡନ୍ କୁଇକ୍ସୋଟ | ୨.୦୦ |
| ୧୨ ॥ | ସାଇଲସ୍ ମାର୍‌ନାର୍ | ୧.୮୦ |
| ୧୩ ॥ | ଲୌହମୁଖାଧାରୀ ମଣିଷ | ୨.୦୦ |
| ୧୪ ॥ | ରବିନ୍‌ସନ କ୍ରୁଶୋ | ୧.୨୫ |
| ୧୫ ॥ | ଅଶୀଦିନରେ ପୃଥିବୀ ପରିକ୍ରମଣ | ୨.୬୦ |
| ୧୬ ॥ | ଦୁଃଖିମା | ୨.୫୦ |
| ୧୭ ॥ | ଶେକ୍‌ସପିଅର କାହାଣୀ (୧ମ ଖଣ୍ଡ) | ୨.୦୦ |
| ୧୮ ॥ | ,, ,, (୨ୟ ଖଣ୍ଡ) | ୨.୦୦ |
| ୧୯ ॥ | ,, ,, (୩ୟ ଖଣ୍ଡ) | ୨.୦୦ |
| ୨୦ ॥ | ବିଚିତ୍ର ଚାବିକ | ୨.୨୫ |
| ୨୧ ॥ | ଗ୍ରୀସ୍ ଦେଶର ଉପକଥା | ୨.୨୫ |
| ୨୨ ॥ | ଅନେକ ଆଶା | ୨.୨୫ |
| ୨୩ ॥ | ସମୁଦ୍ର ଗର୍ଭରେ କୋଡ଼ିଏ ହଜାର ଲିଗ୍ ଭ୍ରମଣ | ୨.୨୫ |